ଓଡ଼ିଆ ଗବେଷଣା ପରିଷଦ

**The Institute of Oriya Studies**

Saraswat Nilay, Sri Aurobindo Nagar

Madhupatana, Cuttack-753010

(*Regd. No. CTC 290-290/1980-81*)

ଓଡ଼ିଆ ଗବେଷଣା ପରିଷଦ ଗ୍ରନ୍ଥମାଳା

ସଂପାଦକ ମଣ୍ଡଳୀ :

ଡକ୍ଟର କୃଷ୍ଣଚରଣ ବେହେରା

ଶ୍ରୀ ଚିତ୍ତରଞ୍ଜନ ଦାସ

ଡକ୍ଟର କ୍ଷେତ୍ରବାସୀ ନାୟକ

# ଆଧୁନିକ ଅବବୋଧ

ଶ୍ରୀ ବାଞ୍ଛଚରଣ ଦାସ




୧୯୮୩

ଓଡ଼ିଆ ଗବେଷଣା ପରିଷଦ
ସାରସ୍ୱତ ନିଳୟ, ଶ୍ରୀ ଅରବିନ୍ଦନଗର,
ମଧୁପାଟଣା, କଟକ-୭୫୩୦୧୦

# ଆଧୁନିକ ଅବବୋଧ

ପ୍ରଥମ ପ୍ରକାଶ—୧୯୮୩



ପ୍ରଚ୍ଛଦସଜ୍ଜା—**ଶିଳ୍ପୀ ଶ୍ରୀ ଉଦୟନାରାୟଣ ଜେନା**

ମୁଦ୍ରଣ—**ଉତ୍ତମା ପ୍ରେସ୍**, ଶ୍ରୀଅରବିନ୍ଦନଗର
ମଧୁପାଟଣା, କଟକ-୭୫୩୦୧୦

ପରିବେଷକ :
ପୁସ୍ତକ ଭଣ୍ଡାର, ବ୍ରହ୍ମପୁର-୧, ଗଞ୍ଜାମ
ଏବଂ ବାଙ୍କାବଜାର, କଟକ-୨
ଫ୍ରେଣ୍ଡସ୍ ପବ୍ଲିସର୍ସ, ବିନୋଦବିହାରୀ, କଟକ-୨
ବୁକ୍ସ୍ ଇଣ୍ଟରନେସନାଲ୍, ବାଙ୍କାବଜାର, କଟକ-୨

**ମୂଲ୍ୟ—ପନ୍ଦର ଟଙ୍କା ମାତ୍ର**

The Institute of Oriya Studies
Publication No. 3.

*ADHUNIKA ABABODHA* (*Modern Sensibility*)
*by Sri Raicharan Das* M. Sc.

Published in 1983

Printed at UTTAMA PRESS, Cuttack-753010

Distributors :
Pustak Bhandar, Berhampur-1
and Cuttack-2
Friends' Publishers, Cuttack-2
Books International, Cuttack-2

**Price Rupees Fifteen only.**

ସପ୍ତଦଶ ଶତାବ୍ଦୀରେ ପାଶ୍ଚାତ୍ୟ ବୌଦ୍ଧିକ ଆକାଶରେ ଯେଉଁ କେତୋଟି ଉଜ୍ଜ୍ୱଳ ତାରକାର ଅଭ୍ୟୁଦୟ ହୋଇଥିଲା, ସେମାନଙ୍କ ମଧ୍ୟରେ କେପ୍‌ଲର୍ [୧୫୭୧-୧୬୩୦], ଗାଲିଲିଓ [୧୫୬୪-୧୬୪୨] ଓ ମହାମତି ନିଉଟନ୍ [୧୬୪୨-୧୭୨୭] ଅବିସ୍ମରଣୀୟ । ଏହା ପୂର୍ବରୁ ପଞ୍ଚଦଶ ଶତାବ୍ଦୀର ଦ୍ୱିତୀୟ ଅର୍ଦ୍ଧରେ କପର୍‌ନିକସ୍ [୧୪୭୩-୧୫୪୩] ଅବତୀର୍ଣ୍ଣ ହୋଇଥିଲେ । ଉପରୋକ୍ତ ଚାରିଜଣ ମନୀଷୀଙ୍କ ଉଦ୍ଭାବନ ଓ ଆବିଷ୍କାର ସକଳ ଯୋଗୁ ସପ୍ତଦଶ ଶତାବ୍ଦୀର ଚିନ୍ତା ରାଇଜରେ ଏକ ଅତି ସୁଦୂରପ୍ରସାରୀ ଓ ବୈପ୍ଳବିକ ପରିଣତି-ସଂପନ୍ନ ସଂପୂର୍ଣ୍ଣ ନୂତନ ଦିଗଦର୍ଶନ ପ୍ରବର୍ତ୍ତିତ ହୋଇ-ଥିଲା । ପ୍ରାଚୀନ ଯୁଗର ବୌଦ୍ଧିକତା ମୁଖ୍ୟତଃ ଦେବତାମାନଙ୍କ ରମ୍ୟବିଳାସ (୧) ଥିଲା । ମଧ୍ୟ ଯୁଗରେ, ଦେବତାଠୁ ଓହ୍ଲାଇ ଏହା ଧର୍ମର ରମ୍ୟବିଳାସ-(୨) ରେ ରୂପାନ୍ତରିତ ହୋଇଥିଲା । ସପ୍ତଦଶ ଶତାବ୍ଦୀରେ ଏହି ଦେବତା ଓ ଧର୍ମ-ଜନିତ ବୌଦ୍ଧିକତା ସଂପୂର୍ଣ୍ଣ ରୂପେ ଅନ୍ତର୍ହିତ ହୋଇଯାଇ ତା ଜାଗାରେ ଦେଖାଦେଲା ପ୍ରକୃତି ବା ବିଜ୍ଞାନର ରମ୍ୟବିଳାସ (୩) । ମଧ୍ୟଯୁଗରେ ପ୍ରକୃତି ଥିଲା ଅବିନ୍ୟସ୍ତ, କିନ୍ତୁ ବର୍ତ୍ତମାନ ଦେଖାଦେଲା ସୁବିନ୍ୟସ୍ତ ପ୍ରକୃତି (୪) ।

---

୧ । Romance of the Gods

୨ । Romance of Religion

୩ । Romance of Nature or Romance of Science

୪ । "Nature Methodised"

Those Rules, of Old discoverd not devised
Are nature still, but nature methodised
—Pope [1688-1744]

କପର୍ନିକସ୍ କହିଲେ, ସୂର୍ଯ୍ୟ ପୃଥିବୀ ଚାରିପାଖରେ ପ୍ରଦକ୍ଷିଣ କରୁନାହିଁ । ଆମର ପୃଥିବୀ ସୂର୍ଯ୍ୟ ଚାରିପାଖରେ ଘୂରି ବୁଲୁଛି । ୫ । ଏହାଦ୍ୱାରା ସୌରମଣ୍ଡଳର ପରିବାର ମଧ୍ୟରେ ଓ ମଣିଷର ଚିନ୍ତାଧାରାରେ "ପୃଥିବୀ"ର ବୁନିଆଦି ଭାଙ୍ଗିଗଲା, ଯାହା ଟୋଲେମି [ଖ୍ରୀଷ୍ଟୀୟ ୨ୟ ଶତାବ୍ଦୀ]ଙ୍କ ଅମଳରୁ ବଳବତ୍ତର ଥିଲା । ତାପରେ କେପ୍‌ଲର୍ ସୂର୍ଯ୍ୟ ଚାରି ପାଖରେ ପ୍ରଦକ୍ଷିଣ କରୁଥିବା "ଗ୍ରହ"ଗୁଡ଼ିକର ଗତି ସମ୍ବନ୍ଧରେ ୧୬୦୬ ଓ ୧୬୧୯ ମସିହାରେ ତିନୋଟି ନିୟମ ପ୍ରବର୍ତ୍ତନ କଲେ । ତାଙ୍କର ପ୍ରଥମ ନିୟମ ଅନୁସାରେ "ଗ୍ରହ"ଗୁଡ଼ିକ ସୂର୍ଯ୍ୟ ଚାରିପାଖରେ ଅଣ୍ଡାକାର ବା ବର୍ତ୍ତୁଳାକାର କକ୍ଷରେ ଘୂରି ବୁଲୁଛନ୍ତି । ପିଥାଗୋରାସ୍ [ ପ୍ରାୟ ଖ୍ରୀ. ପୂ. ୫୩୨ ] ନିଜ ତତ୍ତ୍ୱଗୁଡ଼ିକ ମଧ୍ୟରେ, ଖଗୋଳ ବିଜ୍ଞାନ ମଧ୍ୟରେ ଏକ ପ୍ରକାର ନାନ୍ଦନିକ ଆଗ୍ରହ ବା ପରମ୍ପରା ସୃଷ୍ଟି କରି ଯାଇଥିଲେ । ଗ୍ରହଗୁଡ଼ିକ **ବୃତ୍ତାକାର**ରେ ପ୍ରଦକ୍ଷିଣ ନକରି **ବର୍ତ୍ତୁଳାକାର**ରେ ପ୍ରଦକ୍ଷିଣ କରୁଥିବା ପ୍ରମାଣିତ ହେବାରୁ ସେହି ବହୁ ପୁରାତନ ପରମ୍ପରା ଭାଙ୍ଗିଗଲା । ଗାଲିଲିଓଙ୍କ ପ୍ରତିଭା ବହୁ ଦିଗରୁ ବ୍ୟାପକ ଓ ତୀକ୍ଷ୍ଣ ଥିଲା । ତାଙ୍କର ଉଦ୍ଭାବନ ଓ ଆବିଷ୍କାର ସକଳର ନିଅଁ ଉପରେ ନିଉଟନ୍‌ଙ୍କ ଯୁଗାନ୍ତକାରୀ ମୌଳିକ ପ୍ରତିଭା ବିକଶିତ ହୋଇଥିଲା । କପର୍‌ନିକସଙ୍କ ତତ୍ତ୍ୱର ପୃଷ୍ଠପୋଷକତା କରୁଥିବାରୁ ତାଙ୍କୁ ଧର୍ମର ବିରୋଧାଚରଣ କରିବା ଦୋଷରେ ୧୬୩୩ ମସିହାରେ ଦଣ୍ଡିତ କରାଯାଇଥିଲା । ୬ ।

---

୫ । "De Revolutionibus Orbium Coelestium" Published in 1543 [Heliocentric Theory]

୬ । Condemned by Inquisition ।

ଗାଲିଲିଓ ଦୂରବୀକ୍ଷଣ ଯନ୍ତ୍ର ତିଆରି କରି ଛାୟାପଥ ଓ ଶୁକ୍ରତାରା ପର୍ଯ୍ୟବେକ୍ଷଣ କରିଥିଲେ । ବୃହସ୍ପତିର ୪ଟି ଚନ୍ଦ୍ର ଆବିଷ୍କାର କରିଥିଲେ । ଥର୍ମୋମିଟର ତିଆରି କରିଥିଲେ । Projectile, Laws of falling bodies [ପିସାର ଝୁଙ୍କି ପଡ଼ିଥିବା ହର୍ମ୍ୟର ପରୀକ୍ଷା] Dynamics, Inertia, Pendulum ପ୍ରଭୃତି ବହୁ ବିଭିନ୍ନ ବିଷୟରେ ଅନୁଧ୍ୟାନ ଓ ଗବେଷଣା କରି ତାଙ୍କର ତତ୍ତ୍ୱମାନ ଦେଇଥିଲେ ।

ନିଉଟନ୍‌ଙ୍କ ପ୍ରତିଭା ଥିଲା ଯୁଗ-ପ୍ରବର୍ତ୍ତକ, ମୌଳିକ ଓ ବ୍ୟାପକ । ସେ ସମସାମୟିକ ପ୍ରଚଳିତ ସବୁ ଚିନ୍ତାଧାରାକୁ ଆମୁଳଚୁଳ ଓଲଟପାଲଟ କରିଦେଲେ । ତାଙ୍କର ଉଦ୍ଭାବନ ସକଳ ମଧ୍ୟରୁ ଯେ-କୌଣସି ଗୋଟିକ ପାଇଁ ସେ ଚିରସ୍ମରଣୀୟ ହୋଇ ରହିଥାନ୍ତେ । କିନ୍ତୁ ତାଙ୍କ ପ୍ରତିଭା ଥିଲା ଏକ ପ୍ରବାହ—"ପ୍ରବଳ ମତ୍ତ ବାରଣ"; ଯାହା ଯୁଗର ସବୁ ଚିନ୍ତାଧାରାକୁ ପୂରାପୂରି ଧୋଇନେଲା । God said let Newton be ! and all was light । ୭ ।

ମଧ୍ୟଯୁଗର ବୌଦ୍ଧିକ ବିଳାସ ମଧ୍ୟରେ ଆମେ ସୃଷ୍ଟିକୁ କି ରୂପରେ ଦେଖିଥିଲୁ ? ସେତେବେଳେ ସୃଷ୍ଟି ସ୍ରଷ୍ଟାର ଗୋଟିଏ ପାଣ୍ଡୁଲିପି ମାତ୍ର । ପ୍ରକୃତି ସ୍ରଷ୍ଟାର ଇଚ୍ଛାହାର ଆଉ ସ୍ୱାକ୍ଷର । ବସ୍ତୁର ଆଦର୍ଶ ଧର୍ମ ଅଛି । ଆଦର୍ଶ ପ୍ରକୃତି ଅଛି । ପ୍ରତ୍ୟେକ ବସ୍ତୁର ଏକ ଅନ୍ତର୍ନିହିତ ଶୃଙ୍ଖଳା, ଧର୍ମ ବା ବାଧକତା ଅଛି । ମଧ୍ୟଯୁଗୀୟ ପ୍ରକୃତିର ସମସ୍ତ ବେଗ, ଗତିଶୀଳତା ଆଉ ପ୍ରବଣତା ଏଇ ଆଭ୍ୟନ୍ତରୀଣ ଧର୍ମ ଆଉ ଆଦର୍ଶକୁ ଚରିତାର୍ଥ କରିବାପାଇଁ ସତତ ଧାବମାନ ଥିଲା । କିନ୍ତୁ ସପ୍ତଦଶ ଶତାବ୍ଦୀରେ ଅନ୍ଧକାର ଅପସରି ଗଲା । ଆଲୋକ ଆସିଲା । ଅନ୍ଧକାର ଥିଲା କେତେକ ତାତ୍ତ୍ୱିକ ବିହ୍ୱଳତାର । "ଗୁଣ" ଆଉ "ଧର୍ମ" ମଧ୍ୟସ୍ଥ ବିଭ୍ରାନ୍ତି ମଧ୍ୟରେ । ବସ୍ତୁ ମଧ୍ୟସ୍ଥ ଅନ୍ତର୍ନିହିତ ଶୃଙ୍ଖଳା, ଆଦର୍ଶଧର୍ମ ଓ ଇଚ୍ଛାର ପରିକଳ୍ପନା ମଧ୍ୟରେ । ମଣିଷଠାରେ ଦେଖା ଯାଉଥିବା "ଇଚ୍ଛାଶକ୍ତି"କୁ ବସ୍ତୁରେ ଆରୋପ କରାଯିବାର ମୌଳିକ

---

୭ । ତାଙ୍କର ଆବିଷ୍କାର ଓ ଉଦ୍ଭାବନ ସକଳ ମଧ୍ୟରେ Laws of Motion, concept of Force, concept of universal Gravitation, colour theory, Differential and Integral Calculus, ideas about Absolute space and Absolute Time, Optiks [ spectrum, lense etc ], corpuscular theory of light, Mechanics ତତ୍ତ୍ୱ ଇତ୍ୟାଦି ଉଲ୍ଲେଖଯୋଗ୍ୟ । ୧୬୮୭ ମସିହାରେ ତାଙ୍କର "Principia" ଓ ୧୭୦୪ରେ "Optiks" ପ୍ରକାଶିତ ହୋଇଥିଲା ।

ପ୍ରମାଦରେ । ବସ୍ତୁର ଶୃଙ୍ଖଳାକୁ ତାର ଆପାତଃ ସମ ବାହ୍ୟିକ ଛବ ଓ ଗୁଣ-ଗୁଡ଼ିକ ମଧ୍ୟରେ ଅନ୍ୱେଷଣ କରିବାର ପ୍ରବଣତା ମଧ୍ୟରେ । ବସ୍ତୁର ଅସଲ ପ୍ରକୃତିକୁ "କାହିଁକ" ମଧ୍ୟରେ ଅଣ୍ଡାଳି ଖୋଜିବା ଭିତରେ ଏବଂ ପ୍ରକୃତି ଭଣ୍ଡାରର ସବୁ ନିଧି ଅସରପିଗୁଡ଼ିକ "ଅନୁଶୀଳନ" ନ କରି ତା ମଧ୍ୟରେ ଏକ "ସମନ୍ୱୟ" ଖୋଜିବାର ପ୍ରଚେଷ୍ଟା ମଧ୍ୟରେ । ୮ ।

ଆଲୋକ ଆସିଲ "ଗୁଣ" ଉନ୍ମୋଚନ-ବିଳାସ "ଧର୍ମ" ଅନୁଶୀଳନ କରିବା ବିଦ୍ୟାରେ ପରିଣତ ହୋଇଥିବାରୁ । "କାହିଁକ"ର ଅନୁସନ୍ଧାନର ଇନ୍ଦ୍ରଜାଲ "କପରି" ଅନୁସନ୍ଧାନ ବିଦ୍ୟାରେ ରୂପାନ୍ତରିତ ହୋଇଥିବାରୁ । ଅପାର୍ଥିବ, ଆଧ୍ୟାତ୍ମିକ ନିୟମ ବଦଳରେ ପାର୍ଥିବ ନିୟମର ଧାରଣା ଆସିବାରୁ । ବସ୍ତୁର ବ୍ୟବହାରର ସଂଗତି ମଧ୍ୟରେ ଶୃଙ୍ଖଳା ବା ଧାରା ଅନୁସନ୍ଧାନର ପ୍ରଚେଷ୍ଟା ଭିତରୁ । ପରୀକ୍ଷା ପ୍ରଣାଳୀର ଚେଷ୍ଟା ଓ ଅକୃତକାର୍ଯ୍ୟତା [Trial and Error]ର ଅଗ୍ନି ପରୀକ୍ଷା ମଧ୍ୟ ଦେଇ । "ସମନ୍ୱୟ" ପରିବର୍ତ୍ତେ "ଅନୁଶୀଳନ" ପ୍ରଣାଳୀ ଅନୁସରଣ ମାଧ୍ୟମରେ ।

ତେଣୁ ଏଇ ଅଭ୍ୟୁଦୟ ଯୁଗରେ ଆମେ ଆବିଷ୍କାର କଲୁ—ସ୍ରଷ୍ଟାର ଏଇ ଯେ ପାଣ୍ଡୁଲିପି, ତାହା ଏକ ଅଜଣା ଓ ଅବୋଧ ହରଫରେ ଲେଖା ହୋଇଛି । ସ୍ରଷ୍ଟାର ନବସିନ୍ଧା ସାଜ ସେହି ହରଫକୁ ପଢ଼ି ଦେଖିଲୁ ଯେ ତାହା କେତେକ ଶବ୍ଦର ସମାହାର, ବାକ୍ୟ ନୁହେଁ ।—ଠିକ୍ ଭାବରେ କହିଲେ, କେତେକ ଅକ୍ଷରର ସମାହାର—ଶବ୍ଦ ବି ନୁହେଁ । ତେଣୁ ପାଣ୍ଡୁଲିପିଟିକୁ ପ୍ରକାଶ କରିବା ପୂର୍ବରୁ ତାର ଵ୍ୟାପାର ପରିବର୍ତ୍ତନ ଲୋଡ଼ା । "କାହିଁକ"ରୁ "କପରି", "ଗୁଣ"ରୁ "ଧର୍ମ", "ସମନ୍ୱୟ"ରୁ "ଅନୁଶୀଳନ" ।

---

୮ । Intuitive experience sustained by logical argument. ରାଧାକୃଷ୍ଣନ୍ ତାଙ୍କର Indian Philosophy-Vol. ପୃ ୪୮ ରେ "ଦର୍ଶନ" ଶବ୍ଦର ଅର୍ଥ ବୁଝାଇବାକୁ ଯାଇ ଏହି ବ୍ୟାଖ୍ୟା କରିଛନ୍ତି ।

ବିଜ୍ଞାନ ଯୁଗର ଏହି ଅଭ୍ୟୁଦୟ ଏକ ଯୁଗାନ୍ତକାରୀ ଘଟଣା । ପୂର୍ବବର୍ତ୍ତୀ ସମସ୍ତ ଶତାବ୍ଦୀଠାରୁ ଯେଉଁ ସବୁ ଉପାଦାନ ଦ୍ୱାରା "ଆଧୁନିକ ଯୁଗ" ଅଲଗା ବୋଲି କୁହାଯାଏ, ସେ ସବୁର ମୂଳରେ ଏଇ "ବିଜ୍ଞାନ" ରହିଛି । ଚିନ୍ତାଧାରା ଦୃଷ୍ଟିରୁ ଆଧୁନିକ ଯୁଗର ଆରମ୍ଭ ଏଇ ସପ୍ତଦଶ ଶତାବ୍ଦୀରୁ । ପ୍ଲାଟୋ ବା ଆରିଷ୍ଟଟଲ ଇଟାଲିର ଅଭ୍ୟୁଦୟ ଯୁଗ [Renaissance]ର ବିଚାରଧାରା ବୁଝି ପାରିଥାନ୍ତେ, ଏଥିରେ ସନ୍ଦେହ ନାହିଁ । ଲୁଥରଙ୍କ (୧୪୮୩-୧୫୪୬) ବିଚାରଧାରା ହୁଏତ ଥୋମାସ୍ ଆକ୍ୱିନାସ୍‌ଙ୍କ (୧୨୨୫-୭୪) ଅଡୁଆରେ ପକାଇଥାନ୍ତା, କିନ୍ତୁ ସେଗୁଡ଼ିକ ବୁଝିବା ପାଇଁ ତାଙ୍କୁ ବିଶେଷ ଅସୁବିଧା ହୋଇ ନ ଥାନ୍ତା । କିନ୍ତୁ ସପ୍ତଦଶ ଶତାବ୍ଦୀରେ ଏ ଅବସ୍ଥା ରହିଲା ନାହିଁ । ପ୍ଲାଟୋ, ଆରିଷ୍ଟଟଲ, ଆକ୍ୱିନାସ୍ ପ୍ରଭୃତି ପୂର୍ବସୂରିଗଣ ଏ ଶତାବ୍ଦୀର ଚିନ୍ତାଧାରା ଏ ମୁଣ୍ଡରୁ ସେମୁଣ୍ଡ ବୁଝିପାରି ନ ଥାନ୍ତେ । ସେମାନଙ୍କୁ ଏହି ଶତାବ୍ଦୀର ଚିନ୍ତାଧାରା ଓ ତତ୍ତ୍ୱଗୁଡ଼ିକ ପୁରାପୁରି ଉଦ୍ଭଟ ମନେ ହୋଇଥାନ୍ତା ।୯।

ଏହାର କାରଣ ହେଲା ଏ ଯୁଗରେ ଏକୁ ଆରେକ ବଳିଆର ପୂର୍ବସୂରିମାନେ ଗୋଟିକ ପରେ ଗୋଟିଏ ହଟିଗଲେ । ଏ ଯୁଗର ଉଦ୍ଭାବନ ଓ ଆବିଷ୍କାର ସକଳ ଦ୍ୱାରା, ପୂର୍ବସୂରିମାନଙ୍କ ଦ୍ୱାରା ପ୍ରତିଷ୍ଠିତ, ପ୍ରବର୍ତ୍ତିତ ଓ ପ୍ରୋତ୍ସାହିତ ବିଚାରଧାରାଗୁଡ଼ିକ ଗୋଟିଏ ପରେ ଗୋଟିଏ ପ୍ରମାଦପୂର୍ଣ୍ଣ ବୋଲି ପ୍ରମାଣିତ ହୋଇଗଲା । ପୂର୍ବସୂରି ଆଉ ରହିଲେ ନାହିଁ । ସବୁ ହୋଇଗଲେ ସ୍ମୃତି, କାଲେଣ୍ଡରର ଛବି । ପୁରାତନ ପରମ୍ପରା ଆଉ ରହିଲା ନାହିଁ । ପୁରାତନ ପଞ୍ଚବଟୀ କୁଡ଼ିଆର ଚାଳ ଗାର ଉଡ଼ିଗଲା । ମଧ୍ୟଯୁଗୀୟ ବୌଦ୍ଧିକତା ଅପସରି ଗଲା । ଧର୍ମର ନିଗଡ଼ ବି ଶିଥିଳ ହୋଇଗଲା ।

ଆଧୁନିକ ଯୁଗର ଆରମ୍ଭ ଏଇ ନୂତନ ପରମ୍ପରା ଗଠନରୁ, ପୁରାତନ ପରମ୍ପରାର ବିନାଶରୁ । ଏଇ ନୂତନ ଦିଗନ୍ତର ଆବିଷ୍କାରରୁ ।

---

୯ । History of Western Philosophy by Bertrand Russel, Unwin University books, 1961; Book Three Chap. VI "The rise of Science"—Page 512.

ପ୍ରମାଦରେ । ବସ୍ତୁର ଶୃଙ୍ଖଳାକୁ ତାର ଆପାତଃ ସମ ବାହ୍ୟିକ ଛବ ଓ ଗୁଣ-ଗୁଡ଼ିକ ମଧ୍ୟରେ ଅନ୍ୱେଷଣ କରିବାର ପ୍ରବଣତା ମଧ୍ୟରେ । ବସ୍ତୁର ଅସଳ ପ୍ରକୃତିକୁ "କାହିଁକି" ମଧ୍ୟରେ ଅଣ୍ଡାଳି ଖୋଜିବା ଭିତରେ ଏବଂ ପ୍ରକୃତି ଭଣ୍ଡାରର ସବୁ ତଥ୍ୟ ଅସରପିଗୁଡ଼ିକ "ଅନୁଶୀଳନ" ନ କରି ତା ମଧ୍ୟରେ ଏକ "ସମନ୍ୱୟ" ଖୋଜିବାର ପ୍ରଚେଷ୍ଟା ମଧ୍ୟରେ । ୮ ।

ଆଲୋକ ଆସିଲା "ଗୁଣ" ଉନ୍ମୋଚନ-ବିଳାସ "ଧର୍ମ" ଅନୁଶୀଳନ କରିବା ବିଦ୍ୟାରେ ପରିଣତ ହୋଇଯିବାରୁ । "କାହିଁକି"ର ଅନୁସନ୍ଧାନର ଇନ୍ଦ୍ରଜାଲ "କିପରି" ଅନୁସନ୍ଧାନ ବିଦ୍ୟାରେ ରୂପାନ୍ତରିତ ହୋଇଯିବାରୁ । ଅପାର୍ଥିବ, ଆଧ୍ୟାତ୍ମିକ ନିୟମ ବଦଳରେ ପାର୍ଥିବ ନିୟମର ଧାରଣା ଆସିବାରୁ । ବସ୍ତୁର ବ୍ୟବହାରର ସଂଗତି ମଧ୍ୟରେ ଶୃଙ୍ଖଳା ବା ଧାରା ଅନୁସନ୍ଧାନର ପ୍ରଚେଷ୍ଟା ଭିତରୁ । ପରୀକ୍ଷା ପ୍ରଣାଳୀର ଚେଷ୍ଟା ଓ ଅକୃତକାର୍ଯ୍ୟତା [Trial and Error]ର ଅଗ୍ନି ପରୀକ୍ଷା ମଧ୍ୟ ଦେଇ । "ସମନ୍ୱୟ" ପରିବର୍ତ୍ତେ "ଅନୁଶୀଳନ" ପ୍ରଣାଳୀ ଅନୁସରଣ ମାଧ୍ୟମରେ ।

ତେଣୁ ଏଇ ଅଭ୍ୟୁଦୟ ଯୁଗରେ ଆମେ ଆବିଷ୍କାର କଲୁ—ସ୍ରଷ୍ଟାର ଏଇ ଯେ ପାଣ୍ଡୁଲିପି, ତାହା ଏକ ଅଜଣା ଓ ଅବୋଧ ହରଫରେ ଲେଖା ହୋଇଛି । ସ୍ରଷ୍ଟାର କବିତା ପାଳି ସେହି ହରଫକୁ ପଢ଼ି ଦେଖିଲୁ ଯେ ତାହା କେତେକ ଶବ୍ଦର ସମାହାର, ବାକ୍ୟ ନୁହେଁ । —ଠିକ୍ ଭାବରେ କହିଲେ, କେତେକ ଅକ୍ଷରର ସମାହାର—ଶବ୍ଦବି ନୁହେଁ । ତେଣୁ ପାଣ୍ଡୁଲିପିଟିକୁ ପ୍ରକାଶ କରିବା ପୂର୍ବରୁ ତାର ଭାଷାର ପରିବର୍ତ୍ତନ ଲୋଡ଼ା । "କାହିଁକି"ରୁ "କିପରି", "ଗୁଣ"ରୁ "ଧର୍ମ", "ସମନ୍ୱୟ"ରୁ "ଅନୁଶୀଳନ" ।

---

୮ । Intuitive experience sustained by logical argument. ରାଧାକୃଷ୍ଣନ୍ ତାଙ୍କର Indian Philosophy-Vol. ପୃ ୪୮ ରେ "ଦର୍ଶନ" ଶବ୍ଦର ଅର୍ଥ ବୁଝାଇବାକୁ ଯାଇ ଏହି ବ୍ୟାଖ୍ୟା କରିଛନ୍ତି ।

ବିଜ୍ଞାନ ଯୁଗର ଏହି ଅଭ୍ୟୁଦୟ ଏକ ଯୁଗାନ୍ତକାରୀ ଘଟଣା । ପୂର୍ବବର୍ତ୍ତୀ ସମସ୍ତ ଶତାବ୍ଦୀଠାରୁ ଯେଉଁ ସବୁ ଉପାଦାନ ଦ୍ୱାରା "ଆଧୁନିକ ଯୁଗ" ଅଲଗା ବୋଲି କୁହାଯାଏ, ସେ ସବୁର ମୂଳରେ ଏଇ "ବିଜ୍ଞାନ" ରହିଛି । ଚିନ୍ତାଧାରା ଦୃଷ୍ଟିରୁ ଆଧୁନିକ ଯୁଗର ଆରମ୍ଭ ଏଇ ସପ୍ତଦଶ ଶତାବ୍ଦୀରୁ । ପ୍ଲାଟୋ ବା ଆରିଷ୍ଟଟଲ ଇଟାଲିର ଅଭ୍ୟୁଦୟ ଯୁଗ [Renaissance]ର ଭାବଧାରା ବୁଝି ପାରିଥାନ୍ତେ, ଏଥିରେ ସନ୍ଦେହ ନାହିଁ । ଲୁଥରଙ୍କ (୧୪୮୩-୧୫୪୬) ଭାବଧାରା ହୁଏତ ଥୋମାସ୍ ଆକ୍ୱିନାସ୍‌ଙ୍କ (୧୨୨୪-୭୪) ଅଡ଼ୁଆରେ ପକାଇଥାନ୍ତା, କିନ୍ତୁ ସେଗୁଡ଼ିକ ବୁଝିବା ପାଇଁ ତାଙ୍କୁ ବିଶେଷ ଅସୁବିଧା ହୋଇ ନ ଥାନ୍ତା । କିନ୍ତୁ ସପ୍ତଦଶ ଶତାବ୍ଦୀରେ ଏ ଅବସ୍ଥା ରହିଲା ନାହିଁ । ପ୍ଲାଟୋ, ଆରିଷ୍ଟଟଲ, ଆକ୍ୱିନାସ୍ ପ୍ରଭୃତି ପୂର୍ବସୂରିଗଣ ଏ ଶତାବ୍ଦୀର ଚିନ୍ତାଧାରା ଏ ମୁଣ୍ଡରୁ ସେମୁଣ୍ଡ ବୁଝିପାରି ନ ଥାନ୍ତେ । ସେମାନଙ୍କୁ ଏହି ଶତାବ୍ଦୀର ଚିନ୍ତାଧାରା ଓ ତତ୍ତ୍ୱଗୁଡ଼ିକ ପୁରାପୁରି ଉଦ୍ଭଟ ମନେ ହୋଇଥାନ୍ତା ।୯।

ଏହାର କାରଣ ହେଲା ଏ ଯୁଗରେ ଏକୁ ଆରେକ ବଳିଆର ପୂର୍ବସୂରିମାନେ ଗୋଟିକ ପରେ ଗୋଟିଏ ହଟିଗଲେ । ଏ ଯୁଗର ଉଦ୍ଭାବନ ଓ ଆବିଷ୍କାର ସକଳ ଦ୍ୱାରା, ପୂର୍ବସୂରିମାନଙ୍କ ଦ୍ୱାରା ପ୍ରତିଷ୍ଠିତ, ପ୍ରବର୍ତ୍ତିତ ଓ ପ୍ରୋତ୍ସାହିତ ଭାବଧାରାଗୁଡ଼ିକ ଗୋଟିଏ ପରେ ଗୋଟିଏ ପ୍ରମାଦପୂର୍ଣ୍ଣ ବୋଲି ପ୍ରମାଣିତ ହୋଇଗଲା । ପୂର୍ବସୂରି ଆଉ ରହିଲେ ନାହିଁ । ସବୁ ହୋଇଗଲେ ସ୍ମୃତି, କାଲେଣ୍ଡରର ଛବି । ପୁରାତନ ପରମ୍ପରା ଆଉ ରହିଲା ନାହିଁ । ପୁରାତନ ପଞ୍ଚବଟୀ କୁଡ଼ିଆର ଚାଳ ଗାର ଉଭେଇ ଗଲା । ମଧ୍ୟଯୁଗୀୟ ବୌଦ୍ଧିକତା ଅପସରି ଗଲା । ଧର୍ମର ନିଗଡ଼ ବି ଶିଥିଳ ହୋଇଗଲା ।

ଆଧୁନିକ ଯୁଗର ଆରମ୍ଭ ଏଇ ନୂତନ ପରମ୍ପରା ଗଠନରୁ, ପୁରାତନ ପରମ୍ପରାର ବିନାଶରୁ । ଏଇ ନୂତନ ଜଗତର ଆବିଷ୍କାରରୁ ।

---

୯ । History of Western Philosophy by Bertrand Russel, Unwin University books, 1961; Book Three Chap. VI "The rise of Science"—Page 512.

ଏଇ ଦିଗନ୍ତର ଏକ ପ୍ରାନ୍ତର ସୀମା ସେଣ୍ଟ୍‌ସ୍‌ବରୀ [୧୮୪୫–୧୯୩୩]ଙ୍କ ମଧ୍ୟରେ ଅନୁସନ୍ଧାନ କରାଯାଇପାରେ । ସେ କହିଥିଲେ "କବି ଆରମ୍ଭରେ, ମଝିରେ ଓ ଶେଷରେ, ପୂର୍ବସୂରିମାନଙ୍କ ଅଭ୍ୟାସ ପ୍ରତି ଦୃଷ୍ଟିପାତ କରିବା ଉଚିତ । ପୂର୍ବସୂରିମାନେ ପ୍ରାୟ ସବୁ କଥା ଅନୁମାନ କରି ପାରିଥିଲେ ଏବଂ ଯେଉଁସବୁ ବିଷୟ ଉପରେ ସେମାନେ ନିଜର ଅନୁମାନ ଦେଇ ଯାଇଛନ୍ତି, ସେମାନେ ତାହା ଏତେ ଭଲ ଭାବରେ କରିଛନ୍ତି ଯେ ସେମାନଙ୍କୁ ଅନୁକରଣ କରିବା ହିଁ କୃତକାର୍ଯ୍ୟତା ହାସଲ କରିବାର ଶ୍ରେଷ୍ଠ ପନ୍ଥା" ।୧୦।

ଏହା ସହ ତୁଳନାତ୍ମକ ଭାବେ ଅପର ପ୍ରାନ୍ତରେ ଗାଲିଲିଓଙ୍କୁ ସ୍ମରଣ କରାଯାଇ ପାରେ । କପର୍ନିକସଙ୍କ ଭାବଧାରାର ପୃଷ୍ଠପୋଷକତା କରିବାର ଅପରାଧ ଯୋଗେ, ଅର୍ଥାତ୍ ସେହି ହେତୁ ପୁରାତନ ଭାବଧାରାର ବିରୋଧାଚରଣ କରିବା ଯୋଗୁଁ ତାଙ୍କୁ ମୃତ୍ୟୁ ବରଣ କରିବାକୁ ପଡ଼ିଥିଲା । ୧୬୧୫ ମସିହାରେ କପର୍ନିକସଙ୍କ ଭାବଧାରା ସପକ୍ଷରେ ବିଜ୍ଞାନ ଚର୍ଚ୍ଚାରେ "ବାଇବେଲ"ର ଉଦ୍ଧୃତ ବ୍ୟବହାର ସମ୍ପର୍କରେ ସେ ଟସ୍କାନର ଗ୍ରାଣ୍ଡଡଚେସ୍‌ଙ୍କ ପାଖକୁ ଖଣ୍ଡିଏ ଚିଠି ଲେଖିଥିଲେ । ସେହି ଚିଠି ନୂତନ ଯୁଗର ଦ୍ୟୋତନା ଓ ସଙ୍କେତ ସ୍ପଷ୍ଟ ଭାବେ ବହନ କରିଥିଲା । ସେଥିରେ ସେ କହିଥିଲେ ଯେ—"ପ୍ରକୃତ

---

୧୦ । "The poet is to look first, midmost, and last to the practice of the ancients········· The ancients have anticipated almost every thing, and in every thing that they have anticipated have done so well that the best chance of success is simply to imitate them."

Quoted in "Literary Criticism"—a short history by William K. Wimsatt, Jr. and Cleanth Brooks, 2nd Indian Rerpint, Oxford & I. B. H. Publishing Co. Chap-9 Page (16).

ଅଲଂଘନୀୟ ଓ ଅପରିବର୍ତ୍ତନୀୟ । ଯେଉଁ ନିୟମ ଗୁଡ଼ିକ ଦ୍ୱାରା ପ୍ରକୃତି ପରିଚାଳିତ, ତାହା ସେ କେବେ ଲଙ୍ଘନ କରେ ନାହିଁ । ମଣିଷ ପକ୍ଷରେ ସେହି ନିୟମଗୁଡ଼ିକ ବା ସେହି ନିୟମର ପ୍ରଣାଳୀଗୁଡ଼ିକ ସ୍ପଷ୍ଟ ବା ଜ୍ଞେୟ ହେଉ ବା ନ ହେଉ, ତଦ୍ୱାରା ପ୍ରକୃତି ପ୍ରଭାବିତ ହୁଏ ନାହିଁ । ସେହି କାରଣରୁ, ଯାହା ଇନ୍ଦ୍ରିୟାନୁଭୂତି ସାହାଯ୍ୟରେ ଆମ ପାଖକୁ ଆସିଛି, ବା ପରୀକ୍ଷା ଦ୍ୱାରା ଆମ ସମକ୍ଷରେ ପ୍ରମାଣିତ ହୋଇଛି, ସେ ସବୁ ସତ୍ୟ ବା ତଥ୍ୟକୁ ବାଇବେଲରେ ଥିବା କୌଣସି ଉଦ୍ଧୃତି ଯୋଗୁଁ ମିଥ୍ୟା ବୋଲି କହିବା ତ ଦୂରର କଥା, ପ୍ରଶ୍ନ କରିବା ମଧ୍ୟ ସଙ୍ଗତ ନୁହେଁ । କାରଣ ଶବ୍ଦର ଆବରଣ ତଳେ ହୁଏତ ସେଗୁଡ଼ିକର କିଛି ବିକଳ୍ପ ଅର୍ଥ ଥାଇପାରେ ।" ।୧୧।

---

୧୧ । Letter to the Grand Duchess of Tuscany concerning the uses of Biblical Quotations in Matters of Science [by Galileo in 1615 defending the system of Copernicus] :-

"Nature is inexorable and immutable; she never transgresses the laws imposed upon her, or cares a whit whether her abstruse reasons and methods of operation are understandable to men. For that reason it appears that nothing physical which sense experience sets before us, ought to be called in question [much less condemned], upon the testimony of Biblical passages which may have some different meaning beneath their words".

Quoted at page 91—"Science and Humane Values" by J. Bronowski, pelican.

Julian Jaynes ଏ ସମ୍ପର୍କରେ କହିଛନ୍ତି :-

ଏ ଶତି ନୂତନ ସୂର୍ଯ୍ୟର ଅରୁଣିମାରେ ଆରକ୍ତ । ଉଦୟାଚଳର ନୂତନ ରଥଚକ୍ରର ନିର୍ଘୋଷରେ ଏହାର ସ୍ୱର ସ୍ପନ୍ଦିତ । ଏହା ଏକ ନୂତନ ଯୁଗର କାଳନ୍ଦୀତଟରେ ମୁରଲୀର ମୂର୍ଚ୍ଛନା । ନୂତନ ଆହ୍ୱାନର, ନୂତନ ଭାବ ପାରାବାରର, ନୂତନ ଦିଗ୍‌ବଳୟର ।

ସେହି ଦମ୍ଭ ଆଉ ଆତ୍ମବିଶ୍ୱାସର ସନ୍ଧାନ ମିଳେ ପରବର୍ତ୍ତୀ କାଳରେ "ଗସ୍" [୧୭୭୭-୧୮୫୫]ଙ୍କ ଲେଖା ମଧ୍ୟରେ, ନିଉଟନ୍‌ଙ୍କ ମାଧ୍ୟାକର୍ଷଣ ତତ୍ତ୍ୱ

---

The real chasm was between the political authority of the church and the individual authority of experience. And the real question was whether we are to find our lost authorisation through an apostolic succession from ancient prophets who heard divine voices or through searching the heavens of our own experience right now in the objective world without any priestly intercession. As we all know, the latter became Protestantism and, in its rationalist aspect, what we have come to call the Scientific Revolution.

[The Origin of consciousness in the breakdown of the bicameral mind—by Julian Jaynes, Allen Lane Penguin Books Ltd., 1979, Page 435]

[ଠିକ୍ ଏଇ ଦମ୍ଭ ଓ ଦ୍ୟୋତନା ପ୍ରକାଶ ପାଇଥିଲା ସକ୍ରେଟିସ [ଖ୍ରୀ.ପୂ. ୪୭୦-୩୯୯]ଙ୍କ ମୃତ୍ୟୁକାଳୀନ ଜମାନବନ୍ଦୀ ମଧ୍ୟରେ । ଏହାର ବିବରଣୀ ପୃ-୧୦୩-୧୦୪ରେ ଦେଖିବାକୁ ମିଳିବ । ସକ୍ରେଟିସ୍ ସେତେବେଳେ ତାଙ୍କର ପୂର୍ବ ପୁରୁଷମାନଙ୍କ ଚିନ୍ତାଧାରାର ବିରୋଧ କରିଥିଲେ ।]

ସମ୍ବନ୍ଧରେ କହିବାକୁ ଯାଇ । "ମାଧ୍ୟାକର୍ଷଣ ତତ୍ତ୍ୱ" ଅନୁଶୀଳନର ବହୁ ନୂତନ ଓ ଚମତ୍କାର ପର୍ଯ୍ୟାୟ ଉନ୍ମୋଚନ କରିଦେଲା । ସେ ପର୍ଯ୍ୟନ୍ତ "ତାରା"ମାନଙ୍କ ପାଇଁ କୌଣସି ବାଧ୍ୟତା ନଥିଲା । ଯାହା ବା ଥିଲା, ସେହି ବନ୍ଧନର ଫାଶକୁ ସେମାନେ ଅକ୍ଲେଶରେ ଏଡ଼ିଦେଇ ପାରୁଥିଲେ । କିନ୍ତୁ ତା ଆଉ ରହିଲା ନାହିଁ । ସେମାନେ ବର୍ତ୍ତମାନ "ଶତ୍ରୁ"ରୁ "ଅତିଥି" ଭାବରେ ରୂପ ପରିଗ୍ରହ କଲେ । ଗଣନାଦ୍ୱାରା ତାଙ୍କ ପାଇଁ ନିର୍ଦ୍ଦିଷ୍ଟ କକ୍ଷରେ ସେମାନେ ଯାତାୟାତ କରୁଛନ୍ତି । 'ଗ୍ରହ' ଗୁଡ଼ିକଙ୍କ ପାଇଁ ଯେଉଁ ଶାଶ୍ୱତ ନିୟମ ଉଦ୍ଦିଷ୍ଟ, ସେହି ନିୟମ ଗୁଡ଼ିକ ଅତି ଯତ୍ନର ସହ ପାଳନ କରି ସେମାନେ ଅତିବାହିତ ହେଉଛନ୍ତି" ।୧୨।

ଏହା ପ୍ରକୃତ ବିଜ୍ଞାନରେ ସଂଗ୍ରାମର ଅବସାନ । ପ୍ରକୃତି ଆଉ ଶତ୍ରୁ ନୁହେଁ । ଅଜଣା ନୁହେଁ । ପ୍ରକୃତି ଅତିଥି । ବନ୍ଧୁ ଆଉ ସୋଦର ।

---

୧୨ । "The system of universal gravitation had paved the way to new and most brilliant triumphs in analysis; and the comets, upto that time wholly unmanageable, or soon breaking from the restraints to which they seemed to be subjected, having now submitted to control, and being transformed from enemies to guests, moved on in the path marked out in the calculus, scrupulously conforming to the same eternal laws that govern the planets".

Karl Friedrich Gauss--Theory of the motion of the heavenly bodies moving about the sun in conic sections--a translation of "Theoria Motus" [1848-52] by Charles Henry Davis, Dover Publications Inc. N. Y. Preface-Pages x-xi.

ଏହା ସୁନିୟନ୍ତ୍ରିତ ପ୍ରକୃତି । ନିୟମାନୁବର୍ତ୍ତିତା । ଶାଶ୍ୱତ ନିୟମ । ଏଠି ଧର୍ମାନ୍ଧତା ନାହିଁ । ଅନ୍ଧ ମୋହ ନାହିଁ । ସଂଗ୍ରାମ ଶାନ୍ତ ପଡ଼ିଯାଇଛି । ବିଦ୍ରୋହର ଅବସାନ ହୋଇଛି ଏବଂ ଏଇ ନୂତନତାର ସନ୍ଧାନ ଯେମିତି ବ୍ୟାପିଛି ଜୀବନର ସବୁ ବିଭବ ଆଡ଼କୁ ।

ବେନ୍ ଜନ୍‌ସନ୍ [ ୧୫୭୩-୧୬୩୭ ] ସେହି କଥାର ପ୍ରତିଧ୍ୱନି ସାହିତ୍ୟରେ ଉତ୍ତୋଳନ କରିଥିଲେ । "କବିମାନଙ୍କୁ ବିଚାର କରିବା ପାଇଁ କେବଳ କବି ହିଁ ଯୋଗ୍ୟ । ପୁଣି ସବୁଠାରୁ ଭଲ କବି । ବୈୟାକରଣିକ ବା ଦାର୍ଶନିକମାନେ ନିର୍ଦ୍ଦିଷ୍ଟ କରି ଯାଇଥିବା ଗଣ୍ଡୀ ମଧ୍ୟରେ କବିର ସ୍ୱାଧୀନତା ସୀମିତ ନୁହେଁ । ୧୩ ।

ତା ପଛକୁ ବାହାରିଲେ ଆଦର୍ଶନିକ ଦେକାର୍ତ୍ତ୍ [ ୧୫୯୬-୧୬୫୦ ] । ସେ କହିଲେ ଯେ—"କୌଣସି ବିଷୟର ପ୍ରକୃତ ପ୍ରକୃତି ଜାଣିବା ପାଇଁ ଅନ୍ୟମାନଙ୍କର ପର୍ଯ୍ୟବେକ୍ଷଣ ବା ମତାମତ ଧାରି ଆଣିବା ଆବଶ୍ୟକ ନାହିଁ । ନିଜେ ନିଷ୍ଠାର ସହ ଅନୁଭବ କଲେ ସେ ସମ୍ବନ୍ଧରେ ସତ୍ୟ ଉଦ୍‌ଘାଟିତ ହୋଇପାରିବ । ପୂର୍ବସୂରିମାନେ ଯାହା ଆମକୁ ଶିଖାଇ ଯାଇଛନ୍ତି, ତାହାର ଗୁରୁତ୍ୱ ଖୁବ୍ କମ୍, ଏବଂ ବହୁସ୍ଥଳରେ ତାହା ବିଶ୍ୱାସଯୋଗ୍ୟ ନୁହେଁ । ତେଣୁ

---

୧୩ । To Judge of poets is only the faculty of poets; and not of all poets, bet the best. x x x. I am not of the opinion to conclude a poet's liberty within the narrow limits of laws which either the grammarians or the philosophers prescribe"

Quoted in The Making of Literature by R. A. Scott-James, Secker & Warburg-London, 1967, Pages 127-128.

ସେମାନେ ଯେଉଁ ପନ୍ଥା ଅନୁସରଣ କରିଥିଲେ, ସେହି ପନ୍ଥା ପରିତ୍ୟାଗ ନକଲେ ସତ୍ୟ ଉଦ୍‌ଘାଟିତ ହୋଇ ପାରିବ ନାହିଁ" । ୧୪ ।

ଏହି ବିଦ୍ରୋହ ଥିଲା ପରୋକ୍ଷ । କିନ୍ତୁ କ୍ରମେ ଏହା ପ୍ରତ୍ୟକ୍ଷ ହୋଇଗଲା । ସିଧା । ଜନ୍ ଡ୍ରାଇଡେନ୍ [୧୬୩୧-୧୭୦୦] ଏକଥା ସିଧା କହିଥିଲେ । "ଆରିଷ୍ଟଟଲ କହିଛନ୍ତି ବୋଲି କହିଦେଲେ ଯଥେଷ୍ଟ ହେବନାହିଁ । ଆରିଷ୍ଟଟଲ ତାଙ୍କ ତତ୍ତ୍ୱର ରୂପକଳ୍ପ ଆଣିଥିଲେ ସୋଫୋକ୍ଲିସ୍ ଓ ଇଉରିପିଡ୍ସଙ୍କ ବିୟୋଗାନ୍ତକ ନାଟକଗୁଡ଼ିକ ମଧ୍ୟରୁ । ସେ ଆମର ନାଟକଗୁଡ଼ିକ ଦେଖି-ଥିଲେ ବୋଧହୁଏ ତାଙ୍କର ମତ ପରିବର୍ତ୍ତନ କରିଥାନ୍ତେ" । ୧୫ ।

---

(14) Every one, feeling the passions in himself, stands in no need whatever of borrowing any observations elsewhere to discover their nature, nevertheless, what the ancients have taught us on the subject is of such slight intent, and for the most part so untrustworthy, that I cannot have any hope of reaching the truth, except by abandoning the path which they have followed".

Quoted in "A history of Experimental Psychology" by Edwin G. Boring, 2nd Ed, 1969, page 164, The Times of India press, Bombay.

(15) "It is not enough that Aristotle har said so, for Aristotle drew his models of tragedy from Sophocles and Euripides and if he had seen ours, might have changed his mind".

Quoted in "The Making of Literature"-- by R. A. Scott-James, Secker and Warburg, London, 2nd Ed. 1967, page 139.

ଉଇଲିଅମ ବ୍ଲେକ୍ [୧୭୫୭-୧୮୨୭] ସେଇ କଥାର ପ୍ରତିଧ୍ୱନି ତୋଳିଥିଲେ । "ଆମେ ଗ୍ରୀକ୍ ବା ରୋମାନ ମଡ଼େଲ ଚାହୁଁ ନାହୁଁ । ନିଷ୍ଠାପର ଭାବରେ ଆମର କଳ୍ପନାର ଅନୁଧାବନ କଲେ ଏହାର ଆବଶ୍ୟକତା ଆଉ ମୋଟେ ରହିବ ନାହିଁ । ୧୬।

ପୁରୁଣା ମଡ଼େଲ ପୁରାପୁରି ଭାଙ୍ଗିଗଲା ସପ୍ତଦଶ ଶତାବ୍ଦୀରେ ।

ଏଇ ସପ୍ତଦଶ ଶତାବ୍ଦୀରେ ବହୁ ଦାର୍ଶନିକ, କବି, ଲେଖକ, ବୈଜ୍ଞାନିକ, ଚିନ୍ତାନାୟକମାନଙ୍କର ଆବିର୍ଭାବ ହୋଇଥିଲା । ଦାର୍ଶନିକ ଦେକାର୍ତ୍ତ୍ [୧୫୯୬-୧୬୫୦], ସ୍ପିନୋଜା [୧୬୩୨-୭୭], ଲକ୍ [୧୬୩୨-୧୭୦୪], ଲାଇବ୍ନିଜ୍ [୧୬୪୬-୧୬୭୯], ବର୍କଲେ [୧୬୮୫-୧୭୫୩] ପ୍ରଭୃତି । ବୈଜ୍ଞାନିକ ଟାଇକୋ [୧୫୪୬-୧୬୦୧], ପାସ୍କାଲ୍ [୧୬୨୩-୬୨], ହାଇଜିନସ୍ [୧୬୨୯-୯୫], ରବର୍ଟହୁକ୍ [୧୬୩୫-୧୭୦୩], ପ୍ରଭୃତି । କବି/ଲେଖକ ସେକ୍ସପିଅର [୧୫୬୪-୧୬୧୬], ମିଲଟନ [୧୬୦୮-୭୪], ସାମୁଏଲ ବଟଲର୍ [୧୬୧୨-୮୦], ଜନ୍ ଡ୍ରାଇଡେନ୍ [୧୬୩୧-୧୭୦୦] ଡାନିଏଲ ଡେଫୋ [୧୬୬୦-୧୭୩୧], ସୁଇଫ୍ଟ [୧୬୬୭-୧୭୪୫], ସ୍ୱିଡେନବର୍ଗ [୧୬୮୮-୧୭୭୨], ଆଲେକଜାଣ୍ଡର ପୋପ୍ [୧୬୮୮-୧୭୪୪], ଭୋଲଟାୟାର [୧୬୯୪-୧୭୭୮], ପ୍ରଭୃତି । ହବ୍ସ୍ [୧୫୮୮-୧୬୭୯], ଅଲିଭର କ୍ରମ୍ୱେଲ [୧୫୯୯-୧୬୫୮], ଜୋସେଫ ଆଡ଼ିସନ [୧୬୭୨-୧୭୧୯], ହୋରେସ୍ ଓ୍ୱାଲପୋଲ [୧୬୭୪-୧୭୪୫ ] ପ୍ରଭୃତି ।

ତା ସାଙ୍ଗକୁ ଆସିଥିଲା ବହୁ ନୂତନ ଆବିଷ୍କାର, ଉଦ୍ଭାବନ ଓ ଚିନ୍ତାଧାରା । ଗିଲବର୍ଟଙ୍କ ଚୁମ୍ବକ ସମ୍ବନ୍ଧୀୟ ପୁସ୍ତକ [ ୧୬୦୦ ], ଲିପରସେଙ୍କ

---

(16) "We do not want either Greek or Roman models if we are but just true to aur own imagination."

William Blake-preface to Milton, Quoted in "The Making of Literature"—R. A. Scott. James, Secker and Warbung, London, 1967, page 201.

ଦୂରବୀକ୍ଷଣ ଯନ୍ତ୍ର ଉଦ୍ଭାବନ [ ୧୬୦୮ ], ଗାଲିଲିଓଙ୍କ ଦ୍ୱାରା ବୃହସ୍ପତିର ଚନ୍ଦ୍ର ଆବିଷ୍କାର [ ୧୬୦୯ ], କେପଲରଙ୍କ ଗ୍ରହ ଗୁଡ଼ିକର ଗତିସମ୍ବନ୍ଧୀୟ ନିୟମ ପ୍ରବର୍ତ୍ତନ [ ୧୬୦୯,୧୬୧୯ ], ନେପିଅରଙ୍କ ଗଣିତ ଶାସ୍ତ୍ରର ଲୋଗାରିଥମ୍ ପ୍ରବର୍ତ୍ତନ [ ୧୬୧୪ ], ଫ୍ରାନସିସ୍ ବାକନ୍‌ଙ୍କ ଗଣିତ ଶାସ୍ତ୍ରର ଅବରୋହ ଉପପାଦନ ପ୍ରଣାଳୀ ପ୍ରତିପାଦନ [୧୬୨୦] ॥ ୧୭ (କ) ॥, ହାର୍ଭେଙ୍କ ଦ୍ୱାରା ମଣିଷ ଶରୀର ମଧ୍ୟସ୍ଥ ରକ୍ତ ସଞ୍ଚାଳନ ପ୍ରକ୍ରିୟା ଆବିଷ୍କାର [୧୬୨୮] ॥ ୧୭ (ଖ) ॥, ଟରସେଲିଙ୍କ ବ୍ୟାରୋମିଟର ଯନ୍ତ୍ର ଉଦ୍ଭାବନ [ ୧୬୪୩ ], ୧୬୫୦ ମସିହା ବେଳକୁ ଦେକାର୍ତ୍ତଙ୍କର ଆତ୍ମା ସମ୍ବନ୍ଧୀୟ ତତ୍ତ୍ୱ ପ୍ରବର୍ତ୍ତନ ॥ ୧୮ ॥, ଗୁଏରିକୋଙ୍କ ବାୟୁପମ୍ପ ଉଦ୍ଭାବନ [ ୧୬୫୪ ], ୧୬୬୦ରେ ରୟାଲ ସୋସାଇଟି ପ୍ରତିଷ୍ଠା, ୧୬୬୨ରେ ଆଧୁନିକ ରସାୟନ ବିଜ୍ଞାନର ଜନକ ବଏଲଙ୍କ ନିୟମ ପ୍ରବର୍ତ୍ତନ, ମାରିଅଟଙ୍କ ଦ୍ୱାରା ଚକ୍ଷୁର ଅନ୍ଧବିନ୍ଦୁ ଆବିଷ୍କାର [ ୧୬୬୮ ] (୧୯), ବ୍ରାଣ୍ଡଙ୍କ ଫସ୍‌ଫରସ ପ୍ରସ୍ତୁତ [୧୬୬୯ ], ନିଉଟନଙ୍କ ବର୍ଣ୍ଣାଲୀତତ୍ତ୍ୱ ପ୍ରବର୍ତ୍ତନ [ ୧୬୭୨ ], ଲ୍ୟୁଭେନ୍‌ହୁକ୍ କ୍ଷୁଦ୍ରଜୀବାଣୁଙ୍କ [ ବ୍ୟାକ୍‌ଟେରିଆ, ପ୍ରୋଟୋଜୋଆ, ଓ ସ୍ପରମାଟୋଜୋଆ ] ଆବିଷ୍କାର, ଗ୍ଲିସନ୍‌ଙ୍କ ମାଂସପେଶୀ ଗୁଡ଼ିକର କାତରତା ତତ୍ତ୍ୱ (୧୯-କ) (୧୬୭୭) ଓ

---

(17) "Novum Organum" ପୁସ୍ତକରେ Induction ପ୍ରଣାଳୀ ପ୍ରତିପାଦନ ।

(17 କ) De Motu cordis et Sanguinis ପୁସ୍ତକ ।

(18) Animal spirits :—Muscles contract because animal spirits inflate them [quick wind, active and pure fire]

(19) Blind spot of the Eye.

(19 କ) Muscular Irritability.

ଉଇଲିଅମ ବ୍ଲେକ୍ [୧୭୫୭-୧୮୨୭] ସେଇ କଥାର ପ୍ରତିଧ୍ୱନି ତୋଳିଥିଲେ । "ଆମେ ଗ୍ରୀକ୍ ବା ରୋମାନ ମଡ଼େଲ ଚାହୁଁ ନାହୁଁ । ନିଷ୍ଠାପର ଭାବରେ ଆମର କଳ୍ପନାର ଅନୁଧାବନ କଲେ ଏହାର ଆବଶ୍ୟକତା ଆଉ ମୋଟେ ରହିବ ନାହିଁ । ୧୬ ।

ପୁରୁଣା ମଡ଼େଲ ପୁରାପୁରି ଭାଙ୍ଗିଗଲା ସପ୍ତଦଶ ଶତାବ୍ଦୀରେ ।

ଏଇ ସପ୍ତଦଶ ଶତାବ୍ଦୀରେ ବହୁ ଦାର୍ଶନିକ, କବି, ଲେଖକ, ବୈଜ୍ଞାନିକ, ଚିନ୍ତାନାୟକମାନଙ୍କର ଆବିର୍ଭାବ ହୋଇଥିଲା । ଦାର୍ଶନିକ ଦେକାର୍ତ୍ତ୍ [୧୫୯୬-୧୬୫୦], ସ୍ପିନୋଜା [୧୬୩୨-୭୭], ଲକ୍ [୧୬୩୨-୧୭୦୪], ଲାଇବ୍‌ନିଜ୍ [୧୬୪୬-୧୭୧୬], ବର୍କ୍‌ଲେ [୧୬୮୫-୧୭୫୩] ପ୍ରଭୃତି । ବୈଜ୍ଞାନିକ ଗାଲିଲିଓ [୧୫୪୬-୧୬୦୧], ପାସ୍କାଲ୍ [୧୬୨୩-୬୨], ହାଇଜିନସ୍ [୧୬୨୯-୯୫], ରବର୍ଟହୁକ୍ [୧୬୩୫-୧୭୦୩], ପ୍ରଭୃତି । କବି/ଲେଖକ ସେକ୍ସପିଅର [୧୫୬୪-୧୬୧୬], ମିଲ୍‌ଟନ [୧୬୦୮-୭୪], ସାମୁଏଲ ବଟଲର୍ [୧୬୧୨-୮୦], ଜନ୍ ଡ୍ରାଇଡେନ୍ [୧୬୩୧-୧୭୦୦] ଡାନିଏଲ ଡେଫୋ [୧୬୬୦-୧୭୩୧], ସୁଇଫ୍ଟ [୧୬୬୭-୧୭୪୫], ସ୍ୱିଡ଼େନବର୍ଗ [୧୬୮୮-୧୭୭୨], ଆଲେକଜାଣ୍ଡର ପୋପ୍ [୧୬୮୮-୧୭୪୪], ଭୋଲଟାୟାର [୧୬୯୪-୧୭୭୮], ପ୍ରଭୃତି । ହବ୍‌ସ୍ [୧୫୮୮-୧୬୭୯], ଅଲିଭର କ୍ରମ୍‌ୱେଲ [୧୫୯୯-୧୬୫୮], ଜୋସେଫ ଆଡ଼ିସନ [୧୬୭୨-୧୭୧୯], ହୋରେସ୍ ଓ୍ୱାଲପୋଲ [୧୬୭୪-୧୭୪୫] ପ୍ରଭୃତି ।

ତା ସାଙ୍ଗକୁ ଆସିଥିଲା ବହୁ ନୂତନ ଆବିଷ୍କାର, ଉଦ୍ଭାବନ ଓ ଚିନ୍ତାଧାରା । ଗିଲବର୍ଟଙ୍କ ଚୁମ୍ବକ ସମ୍ବନ୍ଧୀୟ ପୁସ୍ତକ [ ୧୬୦୦ ], କେପଲରଙ୍କ

(16) "We do not want either Greek or Roman models if we are but just true to aur own imagination."

William Blake-preface to Milton, Quoted in "The Making of Literature"—R. A. Scott. James, Secker and Warbung, London, 1967, page 201.

ଦୂରବୀକ୍ଷଣ ଯନ୍ତ୍ର ଉଦ୍ଭାବନ [ ୧୬୦୮ ], ଗାଲିଲିଓଙ୍କ ଦ୍ୱାରା ବୃହସ୍ପତିର ଚନ୍ଦ୍ର ଆବିଷ୍କାର [ ୧୬୦୯ ], କେପଲରଙ୍କ ଗ୍ରହ ଗୁଡ଼ିକର ଗତିସମ୍ବନ୍ଧୀୟ ନିୟମ ପ୍ରବର୍ତ୍ତନ [ ୧୬୦୯,୧୬୧୯ ], ନେପିଅରଙ୍କ ଗଣିତ ଶାସ୍ତ୍ରର ଲୋଗାରିଥମ୍ ପ୍ରବର୍ତ୍ତନ [ ୧୬୧୪ ], ଫ୍ରାନସିସ୍ ବାକନ୍ଙ୍କ ଗଣିତ ଶାସ୍ତ୍ରର ଅବରୋହ ଉପ-ପାଦନ ପ୍ରଣାଳୀ ପ୍ରତିପାଦନ [ ୧୬୨୦ ] ॥ ୧୭ (କ) ॥, ହାର୍ଭେଙ୍କ ଦ୍ୱାରା ମଣିଷ ଦେହର ମଧ୍ୟସ୍ଥ ରକ୍ତ ସଞ୍ଚାଳନ ପ୍ରକ୍ରିୟା ଆବିଷ୍କାର [ ୧୬୨୮ ] ॥ ୧୭ (ଖ) ॥, ଟରେସେଲିଙ୍କ ଚାପମାନ ଯନ୍ତ୍ର ଉଦ୍ଭାବନ [ ୧୬୪୩ ], ୧୬୫୦ ମସିହା ବେଳକୁ ଦେକାର୍ତ୍ତେଙ୍କର ଆତ୍ମା ସମ୍ବନ୍ଧୀୟ ତତ୍ତ୍ୱ ପ୍ରବର୍ତ୍ତନ ॥ ୧୮ ॥, ଗୁରିଏକୋଙ୍କ ବାୟୁପମ୍ପ ଉଦ୍ଭାବନ [ ୧୬୫୪ ], ୧୬୬୦ରେ ରୟାଲ ସୋସାଇଟି ପ୍ରତିଷ୍ଠା, ୧୬୬୨ରେ ଆଧୁନିକ ରସାୟନ ବିଜ୍ଞାନର ଜନକ ବଏଲଙ୍କ ନିୟମ ପ୍ରବର୍ତ୍ତନ, ମାରିଅଟଙ୍କ ଦ୍ୱାରା ଚକ୍ଷୁର ଅନ୍ଧବିନ୍ଦୁ ଆବିଷ୍କାର [ ୧୬୬୮ ] (୧୯), ବ୍ରାଣ୍ଡଙ୍କ ଫସ୍‌ଫରସ ପ୍ରସ୍ତୁତ [୧୬୬୯ ], ନିଉଟନଙ୍କ କର୍ଣ୍ଣିକାତତ୍ତ୍ୱ ପ୍ରବର୍ତ୍ତନ [ ୧୬୭୨ ], ଲ୍ୟୁଭେନ୍‌ହୁକ୍ କ୍ଷୁଦ୍ରଜୀବାଣୁଙ୍କ [ ବ୍ୟାକ୍‌ଟେରିଆ, ପ୍ରୋଟୋଜୋଆ, ଓ ସ୍ପରମାଟୋଜୋଆ ] ଆବିଷ୍କାର, ଗ୍ଳିସନ୍‌ଙ୍କ ମାଂସପେଶୀ ଗୁଡ଼ିକର କାତରତା ତତ୍ତ୍ୱ (୧୯-କ) (୧୬୭୭) ଓ

---

(17) "Novum Organum" ପୁସ୍ତକରେ Induction ପ୍ରଣାଳୀ ପ୍ରତିପାଦନ ।

(17 କ) De Motu cordis et Sanguinis ପୁସ୍ତକ ।

(18) Animal spirits :—Muscles contract because animal spirits inflate them [quick wind, active and pure fire]

(19) Blind spot of the Eye.

(19 କ) Muscular Irritability.

ପରିଶେଷରେ ନିଉଟନଙ୍କ ପ୍ରସିଦ୍ଧ "ପ୍ରିନ୍‌ସିପିଆ" ପୁସ୍ତକ ପ୍ରକାଶ [୧୬୮୭]
ଇତ୍ୟାଦି ଇତ୍ୟାଦି ।।୨୦।।

---

୨୦ । ଏହି ସପ୍ତଦଶ ଶତାବ୍ଦୀରେ Ruby glass, cut-glass, etched glass, megaphone, Turkish paper, velvet paper with a pile, fires hoses, fountain pen, Sugar of milk, slide rule ପ୍ରଭୃତି ପ୍ରଥମେ ତିଆରି ହୋଇଥିଲା । ୧୬ଜଣ ବା ଅଧିକ ଲୋକ କାମ କଲାଭଳି Ribbon loom ତିଆରି ହୋଇଥିଲା, ଯାହାର ବ୍ୟବହାର ଉପରେ ୧୬୨୩, ୧୬୩୯, ୧୬୬୧, ୧୬୭୦, ୧୬୭୬ ମସିହାରେ ବିଭିନ୍ନ ଦେଶରେ ବହୁତ କଟକଣା ପ୍ରୟୋଗ କରାଯାଇଥିଲା । ପାସ୍କାଲ ପ୍ରଥମ Calculating Machine ତିଆରି କରିଥିଲେ ।

ଏହି ଶତାବ୍ଦୀରେ ଏକ ଅନୁଷ୍ଠାନ ଭାବରେ "ପ୍ରେସ୍"ର ଆବିର୍ଭାବ ହେଲା । ୧୬୦୯ରେ ପ୍ରଥମ ମାଗାଜିନ Strassburger. Zeitung, ୧୬୨୧ରେ ପ୍ରଥମ ଇଂରାଜୀ ସମ୍ବାଦପତ୍ର, ୧୬୩୧ରେ ପ୍ରଥମ ସରକାରୀ ସମ୍ବାଦପତ୍ର Gazette of France, ୧୬୬୬ରେ London Gazette, ୧୬୬୫ରେ Journal des Scavans, ୧୭୦୨ରେ ପ୍ରଥମ ଦୈନିକ ସମ୍ବାଦପତ୍ର Daily Courant ଇତ୍ୟାଦି ।

[The Seventeenth Century-by G. N. Clark, Oxford Paperback, 2nd Ed, 1962 ପୃ ୬୨, ୬୦, ୨୩୫, ୩୩୧-୨]

୧୬୬୨ ଶତାବ୍ଦୀର ଅନ୍ୟତମ ଯୁଗାନ୍ତକାରୀ ପୁସ୍ତକ ରବର୍ଟ ବଏଲ୍ [୧୬୨୭-୧୬୯୧]ଙ୍କର The Sceptical chymist ପୁସ୍ତକ ପ୍ରକାଶିତ ହୋଇଥିଲା । ଏହି ପୁସ୍ତକରେ ମୌଳିକ ଓ ଯୌଗିକ ପଦାର୍ଥର ଗଠନ ଓ ଧର୍ମ ସମ୍ବନ୍ଧରେ ନୂତନ ତଥ୍ୟମାନ ଦିଆଯାଇଥିଲା । ଏହି ପୁସ୍ତକରେ ଅନ୍ୟନାମ ଥିଲା "Chymico physical doubts and para-

ସପ୍ତଦଶ ଶତାବ୍ଦୀରେ ଆସିଲା ସମ୍ପୂର୍ଣ୍ଣ ଭାବେ ନୂଆ ଗୋଟିଏ ମଡ଼େଲ୍ । ଗୋଟାଏ ନୂଆ ଦିଗନ୍ତ ପୂର୍ବପୁର ଖୋଲିଗଲା ମାନବ ସମକ୍ଷରେ ।

[ ଦୁଇ ]

ଏହା ନିର୍ଦ୍ଦିଷ୍ଟ ଭାବରେ ଏକ ନୂତନ ଯୁଗ । ଏକ ନୂତନ ସଂସ୍କୃତି । ଏ ଯୁଗର, ଏ ସଂସ୍କୃତିର ପ୍ରତୀକ ଏକ ନୂତନ ମାନବ । ଏ ମଣିଷ କି ସୁନ୍ଦର !! ଯୁକ୍ତିରେ ମହାନ । ସାମର୍ଥ୍ୟରେ ଅପରିମେୟ । ରୂପ ଓ ଗଢରେ ମାନଳୀଳ ଓ ପ୍ରଶଂସନୀୟ । ସ୍ୱର୍ଗର ପରୀ ତୁଲ୍ୟ ତାର କାର୍ଯ୍ୟ । ସମ୍ଭାବନାରେ ଦେବତାତୁଲ୍ୟ । ଏ ପୃଥିବୀର ସବୁ ସୌନ୍ଦର୍ଯ୍ୟ ଏବଂ ସବୁ ପ୍ରାଣୀଙ୍କର ପରାକାଷ୍ଠା, ଆଦର୍ଶ ଓ ଉତ୍କର୍ଷରେ ଅନୁପମ ॥୨୧॥

---

doxes touching the experiments whereby vulgar spagirists are wont to endeavour to evince their Salt, Sulphur and Mercury to be the true principles of things" ଏହା ଦ୍ୱାରା ମଧ୍ୟଯୁଗର ଚତୁର୍ଗୁଣ ଓ ଚତୁର୍ଦ୍ରବ୍ୟ ତତ୍ତ୍ୱ; ପାରାସିଲସଙ୍କ ଧସ୍ତୁନାଡ ଓ ତା ସାଙ୍ଗକୁ ରସବିଦ୍ୟା [Alchemy]ର ମୃତ୍ୟୁ ଘଟିଲା ।

| ୨୧ || What a piece of work is man !
How noble in reason !
How infinite in faculty !
In form, in moving how express and admirable !
In action how like an angel !
In apprehension how like a God !
The beauty of the world, and the paragon of animals !

Shakespeare [1564-1616]- Hamlet, Act II
Scene II

ଯୁକ୍ତିରେ ମହାନ ! ଅଳ୍ପ କେତୋଟି ସରଳ ନିୟମରେ ସମଗ୍ର ବିଶ୍ୱର ଗୁରୁତ୍ୱପୂର୍ଣ୍ଣ ଘଟଣା ଗୁଡ଼ିକୁ ବୁଝାଇ ଦିଆ ଯାଇପାରୁଛି । ପୃଥିବୀର ଘଟଣାବଳୀ କେତୋଟି ସରଳ ନିୟମରେ ବନ୍ଧା । ଯୁକ୍ତି ବା ନିୟମରେ ପୃଥିବୀ ଆତଯାତ, ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ ନକ୍ଷତ୍ର ସବୁକିଛି । ସବୁ କିଛି ପରିଷ୍କାର ଆଉ ସ୍ପଷ୍ଟ । ଅସ୍ପଷ୍ଟ, ଅଜ୍ଞେୟ ଆଉ କିଛି ନାହିଁ । All is light ।

ସମାଜ ଓ ସଂସ୍କୃତିର ଏହି ପରିବର୍ତ୍ତନକୁ ଆଦିମ ସମାଜରେ "ଅଗ୍ନିର ଆବିଷ୍କାର" ସହ ତୁଳନା କରାଯାଇପାରେ । ଅଗ୍ନିରୁ ଆଲୋକ ଓ ଆଲୋକ ଦ୍ୱାରା ଅନ୍ଧକାରର ଅପସାରଣ । All is light । ଠିକ୍ ସେହିପରି God said let Newton be, and all was light ।

ଅଗ୍ନିର ଆବିଷ୍କାରକୁ ଆଦିମ ମାନବସମାଜର ପ୍ରଥମ ସାଂସ୍କୃତିକ ବିପ୍ଳବ ଭାବରେ ଗ୍ରହଣ କରାଯାଇପାରେ । ଭାରତୀୟ ପରମ୍ପରାରେ ଅଙ୍ଗିରା ଗୋତ୍ରର ଋଷି ଅଥର୍ବନ ପ୍ରଥମେ ଅଗ୍ନି ଆବିଷ୍କାର କରିଥିଲେ । ଅଥର୍ବନ୍‌ଙ୍କୁ ଅଥର୍ବ-ଅଙ୍ଗିରା ମଧ୍ୟ କୁହାଯାଏ । ଋକ୍‌ବେଦ, ଅଥର୍ବବେଦ, ଓ ଯଜୁର୍ବେଦରେ ଅଥର୍ବନ ଓ ଆନୁଷଙ୍ଗିକ ଶବ୍ଦାବଳୀର ସୂଚନା ମିଳେ । ଋକବେଦରେ ଅଥର୍ବନଙ୍କ ନାମରେ କୌଣସି ସୂକ୍ତ ନାହିଁ । କିନ୍ତୁ ଅଙ୍ଗିରା ଗୋତ୍ରର ବହୁ ଋଷିଙ୍କ ନାମ ଥାଇ ୧୨୧୮ଟି ସୂକ୍ତ ଅଛି । ସେହିପରି ଅଥର୍ବବେଦରେ ୨୦୩୭ଟି ସୂକ୍ତରେ ଅଙ୍ଗିରାମାନଙ୍କ ସମ୍ବନ୍ଧରେ ସୂଚନା ରହିଛି । ୨୨ ।

ଅଗ୍ନି ଉତ୍ପାଦନ ପ୍ରଣାଳୀ ଦୁଇ ଉପାୟରେ ସମ୍ଭବଥିଲା । "ଅଗ୍ନି-ମନ୍ଥନ" [ ଯେପରି କାଠକୁ କାଠ ଘଷି ] ଓ "ଅଗ୍ନି-ଖନନ" [ ଯେପରି ପଥର ବା ଶିଳା ଫଳକର ସଙ୍ଘର୍ଷରେ ] । ଏହା ଥିଲା ଯେପରି ତମସୋ ମା ଜ୍ୟୋତିର୍ଗମୟ ବା ମୃତ୍ୟୋର୍ମା ଅମୃତଂଗମୟ । ଯେପରି ଥିଲା ଏକ ସମ୍ପୂର୍ଣ୍ଣ ନୂତନ ଅଭ୍ୟୁଦୟ । ଅଭ୍ୟୁଦୟ ନୁହେଁ, ଆବିର୍ଭାବ । ଏ ଅଭ୍ୟୁଦୟ ସମସାମୟିକ ଭାବଧାରାର

---

|| ୨୨ || Founder of sciences in ancient India-by Satya prakash-Institute of Ancient Indian studies, New Delhi; 1965 page 15-19.

ବାଧତାରେ ପ୍ରାଚୀନ ପରମ୍ପରାର ଅଭ୍ୟୁଦୟ ନୁହେଁ । ଏହା ନୂତନ ସ୍ୱବଧାର ନୂତନ ଦ୍ୟୋତନା ଓ ନୂତନ ପରମ୍ପରାର ଅଭ୍ୟୁଦୟ । ଶୈଳୋଦ୍ଭବ ନୁହେଁ ଯେପରି ପ୍ରକୃତି-ଉଦ୍ଭବ, ସ୍ୱୟଂଭୂ । ଗ୍ରୀକ୍ ପରମ୍ପରାରେ ପ୍ରମିଥିଅସ୍ ସ୍ୱର୍ଗରୁ ଅଗ୍ନି ଚୋରି କରି ଆଣିଥିଲେ । ମହାଭାରତର ବନପର୍ବରେ ବର୍ଣ୍ଣିତ ପରମ୍ପରାରେ ଅଗ୍ନି ବନସ୍ତକୁ ଚାଲି ଯାଇଥିଲେ ଏବଂ ଅଥର୍ବନ୍ ତାଙ୍କୁ ସେଠାରୁ ଫେରାଇ ଆଣିଥିଲେ । ଏହା କାଠ-କାଠ ପ୍ରମନ୍ଥ ବା ଘର୍ଷଣରୁ ଅଗ୍ନି ଉତ୍ପାଦନ ପ୍ରକ୍ରିୟାର ସାଙ୍କେତିକ ବର୍ଣ୍ଣନା ବୋଲି ଧରନିଆ ଯାଇପାରେ । ୨୩ ।

ଅଗ୍ନି ଆବିଷ୍କାର ପରେ ଅଗ୍ନି-ସଂରକ୍ଷଣର ସମସ୍ୟା ଆସିଲା । ଆଦିମ ସମାଜରେ ପ୍ରତ୍ୟେକ ଜାତି [ Tribe ] ରେ ପ୍ରଥମରୁ ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନରେ ଏହାର ସଂରକ୍ଷଣ କରାଯାଉଥିଲା ଏବଂ ଏହି ଅଗ୍ନି-ସଂରକ୍ଷଣ କାର୍ଯ୍ୟ ବାଧତା ଓ ଆନୁଷ୍ଠାନିକ ଉପଚାର ବିଧିବିଧାନ ମଧ୍ୟରେ ଭବିଷ୍ୟତର ଗୋଷ୍ଠୀଜୀବନ, ରାଜ୍ୟ ବା ରାଷ୍ଟ୍ରର ମୁଖ୍ୟ କାର୍ଯ୍ୟ ଓ ସ୍ୱଭାବ ଗୁଡ଼ିକର ମୂଳ ପଡ଼ିଥିଲା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଅଗ୍ନିସଂରକ୍ଷଣ କାର୍ଯ୍ୟ ଚଳାଇବା ପାଇଁ ନିର୍ମାଣ କରାଯାଉଥିବା ଆବରଣ [ Shed ] ଗୁଡ଼ିକ ଆଦିମ ସ୍ଥାପତ୍ୟର ଜନକ ବୋଲି ଅନେକେ ମତ ପୋଷଣ କରନ୍ତି । ପୁଣି ଗୋଷ୍ଠୀ ପରିବର୍ତ୍ତେ, ବ୍ୟକ୍ତି ଜୀବନରେ ଅଗ୍ନି-ସଂରକ୍ଷଣର ବ୍ୟବସ୍ଥା ପ୍ରବର୍ତ୍ତନ ହେଲା ପରେ ପ୍ରଥମ ଦାମ୍ପତ୍ୟ ଜୀବନ ବା ପ୍ରଥମ ପରିବାର ଗଠନ ସମ୍ଭବ ହେଲା ବୋଲି ଅନ୍ୟ କେତେକଙ୍କର ମତ । "ଶତପଥ ବ୍ରାହ୍ମଣ"ରେ ଉଲ୍ଲେଖ ଅଛି ଯେ ଏହି ଅଗ୍ନି ସଂରକ୍ଷଣ ଉଦ୍ଦେଶ୍ୟରେ ପ୍ରତ୍ୟେକ ଗୃହସ୍ଥ "ଅଗ୍ନ୍ୟାଧାନ" କର୍ମ କରି ଯଜ୍ଞବେଦୀରେ ଅଗ୍ନି ସଂସ୍ଥାପନା କରୁଥିଲେ ।

ଋଷି ଅଙ୍ଗୀରାଙ୍କ ଆବିଷ୍କାରକୁ କାର୍ଯ୍ୟରେ ବିନିଯୋଗ କରିଥିଲେ ଋଷି ବିଶ୍ୱାମିତ୍ର । ସେ "ମନ୍ଥନ"ରୁ ଅଗ୍ନି ଉତ୍ପାଦନ ପାଇଁ ଏକ ଉପକରଣ ତିଆରି

---

॥୨୩॥ ୨୨ପୃ ୪-୫;୨୦ । ଏ ସମ୍ପର୍କରେ ଅନ୍ୟାନ୍ୟ କେତେକ ପରମ୍ପରା ମଧ୍ୟ ପ୍ରଚଳିତ ।

କରି ପାରିଥିଲେ ।।୧୪।। ଏହାହିଁ ଥିଲା ପ୍ରଥମ ପ୍ରଯୁକ୍ତି ବିଦ୍ୟା ବା ପ୍ରାୟୋଗିକ ବିଜ୍ଞାନ । "ଅଧିମନ୍ଥନ"ହିଁ ଘର୍ଷଣ ଦ୍ୱାରା ଅଗ୍ନି ଉତ୍ପାଦନ କରିବାର ପ୍ରଥମ ଉପକରଣ ଥିଲା ।

ଅଗ୍ନି-ସଂରକ୍ଷଣ ସମସ୍ୟା ସମାଧାନ ହୋଇଗଲା ପରେ ଆଦିମ ସମାଜର ପ୍ରଥମ ସାଂସ୍କୃତିକ ବିପ୍ଳବ ଉଦ୍ଭାବିତ ହୋଇଗଲା । ଗୋ-ରସ ଦୁହିବା ଫଳରେ ଲହୁଣୀ ଓ ପରିଶେଷରେ ଘୃତର ଆବିଷ୍କାର ଓ ତାର ବ୍ୟବହାର ଏବଂ କୃଷି ପ୍ରବର୍ତ୍ତନ ପରେ ବିଭିନ୍ନ ପ୍ରକାରର ଖାଦ୍ୟ ଉତ୍ପାଦନରୁ କ୍ରମେ ଆଦିମ ସମାଜର "ପାକଶାଳା" ଓ "ଯଜ୍ଞଶାଳା"ର ବିକାଶ ଘଟିଲା ।।୧୫।। ଏହି 'ପାକଶାଳା'କୁ କେନ୍ଦ୍ର କରି ଗଢ଼ି ଉଠିଲା ପରିବାର ଓ ସାମାଜିକ ଜୀବନ । ସଂସ୍କୃତିର ଏହି ପର୍ଯ୍ୟାୟର ବିକାଶକ୍ରମରେ କ୍ରମେ ଆସିଲା ବହୁ ନୂତନ ନୂତନ ଆବିଷ୍କାର । 'ଶତପଥ ବ୍ରାହ୍ମଣ'ର ଗୋଟିଏ 'କାଣ୍ଡ'ର ବିଷୟବସ୍ତୁ ହେଲା 'ଅଗ୍ନି-ଚୟନ', ବା ଅଗ୍ନି-ଚିତିର ନିର୍ମାଣ ପଦ୍ଧତି । ଦଶମ କାଣ୍ଡରେ 'ଅଗ୍ନି-ରହସ୍ୟ' ସମ୍ବନ୍ଧରେ ବ୍ୟାଖ୍ୟାନ ଅଛି । ପରବର୍ତ୍ତୀ କାଳର Sulva Sutra ଗ୍ରନ୍ଥିକରେ ଉଲ୍ଲେଖିତ ଏହି ଅଗ୍ନି-ଚିତି ସମ୍ବନ୍ଧୀୟ ରଚନା ଗୁଡ଼ିକରୁ ଆଦିମ 'ଜ୍ୟାମିତି'ର ସୃଷ୍ଟି ହୋଇଥିଲା । ।।୧୬ କା।। ପରେ ମନ୍ଦିର ଉପାସନାର ପ୍ରବର୍ତ୍ତନ ଫଳରେ 'ଅଗ୍ନି-ଚୟନ' ସମ୍ବନ୍ଧୀୟ କର୍ମକାଣ୍ଡର ବିଲୟ ଘଟିଲା ଓ ତା ସଙ୍ଗେସଙ୍ଗେ ଏହି ଜ୍ୟାମିତିକ ପରମ୍ପରାର ବିଲୋପ ଘଟିଲା । ୧୬ (ଖ) ।

---

୧୪ । ୨୨-ପୃ ୧୮ ଓ ୩୧ ।

୧୫ । ୨୨-ପୃ ୩୫ ।

୧୬ । (କ) - A cultural history of India-Edited by A.L. Basham clarendon Press, Oxford, 1975-chapter xii - Chapter on Science by H.J.J. winter, page 146.

(ଖ) The science of sulva-by Bibhutibhusan Datta university of calcutta, 1932.

ଋକ୍ ବେଦ, ଅଥର୍ବ ବେଦ, ଯଜୁର୍ବେଦ, ମନୁସ୍ମୃତି, କୃଷ୍ଣ ଯଜୁର୍ବେଦ, ଶୁଳ୍ୱସୂତ୍ର, ଶତପଥ ବ୍ରାହ୍ମଣ, ରାମାୟଣ, ମହାଭାରତ, ଅଷ୍ଟାଧ୍ୟାୟୀ, ଆଶ୍ୱଳାୟନ ଗୃହ୍ୟସୂତ୍ର, କାତ୍ୟାୟନ ଶ୍ରୌତସୂତ୍ର, ଆପସ୍ତମ୍ବ ଶ୍ରୌତସୂତ୍ର ଐତରେୟ ବ୍ରାହ୍ମଣ ଇତ୍ୟାଦି ବହୁ ପୁରାତନ ଶାସ୍ତ୍ରରେ ଅଗ୍ନି ସହ ସମ୍ପୃକ୍ତ ଅନେକ ଶବ୍ଦ, ଆଚାର ବ୍ୟବହାର ଓ କର୍ମ କାଣ୍ଡର ସୂଚନା ମିଳେ । ଅଗ୍ନି-କର୍ମ, ଅଗ୍ନି-କାରିକା, ଅଗ୍ନି-କାର୍ଯ୍ୟ, ଅଗ୍ନି-କୁଣ୍ଡ, ଅଗ୍ନି-ଗୃହ, ଅଗ୍ନି-ଚୟ, ଅଗ୍ନି-ଚକ୍ର, ଅଗ୍ନି-ଜିହ୍ୱା, ଅଗ୍ନି-ତ୍ରୟ, ଅଗ୍ନି-ଦଗ୍ଧ, ଅଗ୍ନ୍ୟାଧାନ, ଅଗ୍ନି-ଚୟନ, ଅଗ୍ନି-ପଦ, ଅଗ୍ନି-ପରୀକ୍ଷା, ଅଗ୍ନି-ପରିଚ୍ଛଦ, ଅଗ୍ନି-ପ୍ରତିଷ୍ଠା, ଅଗ୍ନି-ପରିଧାନ, ଅଗ୍ନି-ପ୍ରସେଚନ, ଅଗ୍ନି-ପ୍ରସ୍ତର, ଅଗ୍ନି-ପ୍ରାୟଶ୍ଚିତ୍ତ, ଅଗ୍ନି-ମନ୍ଥ, ଅଗ୍ନି-ମନ୍ଥନ, ଅଗ୍ନି-ଯୋଜନ ଅଗ୍ନି-ରକ୍ଷଣ, ଅଗ୍ନି-ବଧା, ଅଗ୍ନି-ବିମୋଚନ, ଅଗ୍ନି-ବିହରଣ ଅଗ୍ନି-ସରଣ, ଅଗ୍ନି-ଶୁଶ୍ରୂଷା, ଅଗ୍ନି-ଶ୍ରୋଣୀ, ଅଗ୍ନି-ଷ୍ଟୋମ, ଅଗ୍ନିଷ୍ଟ, ଅଗ୍ନିଷ୍ଟିକା, ଅଗ୍ନି-ସଂସ୍କାର, ଅଗ୍ନି-ସଞ୍ଚୟ, ଅଗ୍ନି-ସାକ୍ଷିକା, ଅଗ୍ନି-ସୂତ୍ର, ଅଗ୍ନି-ହବନ, ଅଗ୍ନି-ହୋତୃ, ଅଗ୍ନି-ହୋତ୍ରୀ, ଅଗ୍ନି-ହୋତ୍ର, ଇତ୍ୟାଦି, ଇତ୍ୟାଦି । ୨୭ ।

ଅଗ୍ନିକୁ କେନ୍ଦ୍ରକରି ଯେଉଁ ଉପଚାର, ଶୃଙ୍ଖଳା ବା ବାଧ୍ୟତା; ପ୍ରଯୁକ୍ତ କ୍ଷେତ୍ରରେ, ଧର୍ମରେ, ଶାସ୍ତ୍ରରେ, ସମାଜରେ, ସାହିତ୍ୟରେ, ସଂସ୍କୃତିରେ ଓ ଜୀବନର ବିଭିନ୍ନ କ୍ଷେତ୍ରରେ ସୃଷ୍ଟି ହୋଇଥିଲା , ସେହି ଉପଚାର ଗୁଡ଼ିକର

---

୨୭ । ଅଗ୍ନି ସମ୍ବନ୍ଧୀୟ କର୍ମକାଣ୍ଡ ଗୁଡ଼ିକ ପାଇଁ ଭିନ୍ନ ଭିନ୍ନ ଉପକରଣର ସୃଷ୍ଟି ହୋଇଥିଲା । ଯଜୁର୍ବେଦ; ତୈତ୍ତିରୀୟ ସଂହିତା ଓ ଅଥର୍ବ ବେଦରେ ଏହି ସବୁ ଉପକରଣ ସମ୍ବନ୍ଧରେ କିଛି ସୂଚନା ମିଳେ ।

The yagnasala was a primitive laboratory and the utensils described in this connection became the basis of a chemical laborory in the alchemic and iatrochemical period ॥ ୨୨ ପୃଷ୍ଠା ୪୯ ଓ ୫୦ ॥

ମୂଳ ପ୍ରେରଣା ଓ ପ୍ରବର୍ତ୍ତନର ମୂଳ ଉତ୍ସ ଥିଲା ଏକ ପ୍ରକାରର ନୂତନ ଅବବୋଧ [ Sensibility ], ଯାହା ତତ୍‌କାଳୀନ ସମାଜର ପଶ୍ଚାତ୍‌ପଟରେ ମାନବ ମନରେ ନୂତନ ଦ୍ୟୋତନା ଆଣିଥିଲା ଏବଂ ସେହି ନୂତନ ଦ୍ୟୋତନା ତତ୍‌କାଳୀନ ସଂସ୍କୃତିର ଚେହେରାକୁ ବି ବଦଳାଇ ଦେଇଥିଲା । ଏହି ଦ୍ୟୋତନାର ଏକ ପ୍ରାନ୍ତରେ ବଶିଷ୍ଠ ତପର ପ୍ରତୀକ ଓ ଅପର ପ୍ରାନ୍ତରେ ବିଶ୍ୱାମିତ୍ର ଯଜ୍ଞର ପ୍ରତୀକ । ଆମ ପୌରାଣିକ ପରମ୍ପରାର ବଶିଷ୍ଠ-ବିଶ୍ୱାମିତ୍ର ସଂଘର୍ଷକୁ ଏଇ ନୂତନ ଅବବୋଧ ଜନିତ ସଂଘର୍ଷ ଭାବରେ ଚିହ୍ନଣ କଲେ ହୁଏତ ଅଯୌକ୍ତିକ ହେବ ନାହିଁ ।

ଠିକ ସେହିପରି ସପ୍ତଦଶ ଶତାବ୍ଦୀର ବିଜ୍ଞାନର ଅଭ୍ୟୁଦୟ ଫଳରେ ଆସିଲା ଯେଉଁସବୁ ଉପଗ୍ରହ, ଶୃଙ୍ଖଳା, ବା ବାଧ୍ୟତା; ଜୀବନର ବିଭିନ୍ନ କ୍ଷେତ୍ରରେ, ସେହି ଉପଗ୍ରହ ଗୁଡ଼ିକର ମୂଳ ପ୍ରେରଣା ଓ ପ୍ରବର୍ତ୍ତନର ମୂଳ ଉତ୍ସ ଥିଲା ଏକ ନୂତନ ଦ୍ୟୋତନା ଆଉ ନୂତନ ଅବବୋଧ [Sensibility] ଯାହା ତତ୍‌କାଳୀନ ସମାଜରେ ଆଣିଥିଲା ନୂତନ ବ୍ୟଞ୍ଜନା ଓ ଦ୍ୟୋତନା, ଫଳରେ ତତ୍‌କାଳୀନ ଓ ପରବର୍ତ୍ତୀ କାଳୀନ ସଂସ୍କୃତିର ଚେହେରାକୁ ପୁରାପୂରି ବଦଳାଇ ଦେଲା ।

ନୂଆ ମଡ଼େଲରୁ ଆସିଲା ନୂଆ ଅବବୋଧ ଆଉ ସଂସ୍କୃତିର ନୂଆ ରୂପ ।

[ ତିନି ]

ଇନ୍ଦ୍ରିୟାନୁଭୂତ ସୂକ୍ଷ୍ମ ଘଟଣାବଳୀର ପର୍ଯ୍ୟବେକ୍ଷଣ, ଏକ ନିର୍ଦ୍ଦିଷ୍ଟ ପର୍ଯ୍ୟାୟର ପର୍ଯ୍ୟବେକ୍ଷଣଗୁଡ଼ିକ ମଧ୍ୟରେ ଏକ ମୀମାଂସା [୨୮] ଦ୍ୱାରା ଧାରା ବା ଶୃଙ୍ଖଳାର ଅନୁସନ୍ଧାନ, ଏହି ମୀମାଂସା ସାହାଯ୍ୟରେ ନୂତନ ଘଟଣାବଳୀ ସମ୍ବନ୍ଧରେ ନୂତନ ପ୍ରକଳ୍ପ ସୃଷ୍ଟି ଏବଂ ଉକ୍ତ ନୂତନ ଘଟଣାବଳୀ ଘଟିବା ବା ଘଟାଇବା ଦ୍ୱାରା ମୀମାଂସାର ପ୍ରାମାଣିକତା ପ୍ରତିଷ୍ଠା—ଏହାହିଁ ବୈଜ୍ଞାନିକ ପଦ୍ଧତି । ଏହି ପଦ୍ଧତିର ଦୁଇଟି ଅଙ୍ଗ । ଗୋଟିଏ ଘଟଣାବଳୀର ସାର୍ବଭୌମତା

(28) Hypothesis

ଅପରନ୍ତି ଉକ୍ତ ଘଟଣାବଳୀକୁ ବୁଝାଉଥିବା ମୀମାଂସାର ସ୍ଥିର ବାଷ୍ଟସ୍ଥତା ସମ୍ବନ୍ଧେ ଏକ ଖୋଲାମନ । ଘଟଣାବଳୀର ବିରୁଦ୍ଧାଚରଣ କଲେ ମୀମାଂସା ବଦଳି ଯାଏ ଏବଂ ଏହି ଘଟଣାବଳୀକୁ ବୁଝାଉଥିବା ଅନ୍ୟ ଏକ ନୂତନ ମୀମାଂସା ଗ୍ରହଣ କରାଯାଏ । ସତ୍ୟାନ୍ବେଷୀତା ଓ ଉଦାରତା ବା ସହନଶୀଳତା ଏହି ପଦ୍ଧତିର ମୁଖ୍ୟ ବିଭବ ।

ସୁତରାଂ ଯୁକ୍ତି [ Reason ] ଏହି ପଦ୍ଧତିର ଏକ ଅବିଚ୍ଛିନ୍ନ ଅଙ୍ଗ । ଯୁକ୍ତି ଓ ତାର ତାତ୍ପର୍ଯ୍ୟ ସମ୍ବନ୍ଧରେ ଆଗରୁ ବହୁତ ପ୍ରକାରର ବିସ୍ତୃତ ଆଲୋଚନା ହୋଇଥିଲା ଓ ପରେ ମଧ୍ୟ ନାନା ପ୍ରକାରର ବିସ୍ତୃତ ଆଲୋଚନା ହୋଇଛି । ଯୁକ୍ତି ବଳରେ କୌଣସି ସତ୍ୟ ବା ବିଶ୍ୱାସରେ ପହଞ୍ଚି ହେବକି ? ଏ ସମ୍ବନ୍ଧରେ ଅନେକ କଥା କୁହା ଯାଇଛି । କେତେକ କହୁଥିଲେ ସତ୍ୟ ଦୁ' ଉପାୟରେ ମିଳେ—ଯୁକ୍ତି ଆଉ ପ୍ରତ୍ୟାଦେଶ ବା ପ୍ରକଟ ।।୨୯।। ଏଇଠି କେତେକ କହୁଥିଲେ-ଈଶ୍ୱରଙ୍କୁ ତିନି ଉପାୟରେ ଜାଣି ହେବ—ଯୁକ୍ତି, ପ୍ରତ୍ୟାଦେଶ ଓ ପ୍ରତ୍ୟକ୍ଷ ।।୩୦।। ପୁଣି ଅନ୍ୟ କେତେକ କହୁଥିଲେ ପ୍ରକଟ ସତ୍ୟ ଯୁକ୍ତିଭିତ୍ତିକ ହେବା ଉଚିତ ।।୩୧।। ଆଉ ଯୋକେଙ୍କ ମତରେ କୌଣସି "ବିଶ୍ୱାସ" ଯୁକ୍ତି ଭିତ୍ତିକ ନୁହେଁ । ସୁତରାଂ ଯୁକ୍ତିର ଆରୋହ ଉପପାଦନ ପ୍ରଣାଳୀ

---

(29) The doctrine of "double truth"—Reason and Revelation, ତ୍ରୟୋଦଶ ଶତାବ୍ଦୀରେ Averro ଙ୍କ ମତବାଦୀ କେତେକ ଓ ଫ୍ରାନସିସ୍ ବାକନ [ ୧୫୬୧--୧୬୨୬ ] ପ୍ରଭୃତି ଏହି ମତବାଦ ପୋଷଣ କରୁଥିଲେ ।

(30) Thomas Acquinas—1225 or 1226-1274
3 ways of Knowing God—
(i) Reason (ii) Revelation (iii) Intuition

(31) Locke [ 1632-1704 ]

( Induction ) ଠିକ୍ ନୁହେଁ ।।୩୨।। ଆଉକେ କେତେକ କହୁଥିଲେ— 'ଯୁକ୍ତି ପର୍ଯ୍ୟାପ୍ତ ନୁହେଁ । ଏହା ସହିତ ହୃଦୟ ବା ସମ୍ବେଦନର ମିଳନ ଆବଶ୍ୟକ ।।୩୩।। ଅନ୍ୟ କେତେକଙ୍କ ମତରେ ଏକ ପ୍ରକାରର ପରିମାର୍ଜିତ ଓ ସମୁନ୍ନତ ଯୁକ୍ତି ଦ୍ୱାରା ସତ୍ୟ ଅନୁସନ୍ଧାନ ସମ୍ଭବ ।।୩୪।। ପୁଣି କେତେକ ଯୁକ୍ତିକୁ ଉପେକ୍ଷା କରି ସମ୍ବେଦନା ଓ ପ୍ରତ୍ୟକ୍ଷ ଜ୍ଞାନକୁ ମୁଖ୍ୟସ୍ଥାନ ଦେଉଥିଲେ ।।୩୫।।

ଅପର ପକ୍ଷରେ 'ଯୁକ୍ତି' ଓ ଅବଧାରଣା 'ପ୍ରଜ୍ଞା'ର ଦୁଇଟି ଶ୍ରେଣୀ ରୂପେ ମଧ୍ୟ କଳ୍ପନା କରାଯାଇଛି । ପ୍ରଜ୍ଞା ଦ୍ୱିବିଧ । ଗୋଟିଏ ହେଲା ଅବଧାରଣା— ଯାହା ଗଣିତରେ କେତେକ ମୀମାଂସା ସାହାଯ୍ୟରେ ବ୍ୟବହାର କରାଯାଏ । ଅନ୍ୟଟି ହେଲା ଯୁକ୍ତି ବା, ଅନ୍ତଦୃଷ୍ଟି, ଯାହା କେବଳ ବିଶୁଦ୍ଧ "ଭାବ" ସହ ସଂପୃକ୍ତ ।। ୩୬ ।। ଏଇଠି କେତେକ କହୁଥିଲେ ଯୁକ୍ତି ପ୍ରଗାଢ଼ ଚିନ୍ତା, ଅନୁଧ୍ୟାନ ଓ ଅଭିନିବେଶ ଉପରେ ଏକାନ୍ତଭାବେ ନିର୍ଭରଶୀଳ । ମଣିଷର ଦୁଇଟି ମୌଳିକ ପ୍ରବୃତ୍ତି ଅଛି । ବଂଶବୃଦ୍ଧି ଓ ଆତ୍ମ ରକ୍ଷା । ଏଇ ଆତ୍ମରକ୍ଷା

---

( 32 ) Hume [ 1711-76 ]

( 33 ) Coleridge [ 1772-1834 ]—Union of head and heart.

( 34 ) Reason in the most exalted mood । ଏହା ସହିତ vision, intuition, imagination; inspiration, illumination, rapture, ecstasy ପ୍ରଭୃତି ବହୁ ବିଦ୍ଧିବ ବିଭିନ୍ନ ସମୟରେ ଯୋଡ଼ା ଯାଇଛି ।

( 35 ) Rousseau [ 1712-78 ], Bergson

( 36 ) Plato [ B. C. 428-348 ]—Two kinds of intellect—understanding and reason.

ପ୍ରବୃତ୍ତି କେତେକାଂଶରେ ଯୁକ୍ତି ଭିତ୍ତିକ ।।୩୭।। ଅନ୍ୟ କେତେକ କହୁଥିଲେ କୌଣସି ଗୋଟିଏ ବିଷୟରେ ସବୁକିଛି ଜାଣିବାର ପ୍ରକୃତ ହେଲା ଯୁକ୍ତି ।। ୩୮ ।। ଓ ବାସ୍ତବତାକୁ ଜାଣିବା ପ୍ରାର୍ଥ ଯୁକ୍ତି ସବୁଠାରୁ ନିରାପଦ ।। ୩୯ ।। ଏହା ଛଡ଼ା ଘଟଣାବଳୀ ଘଟିବାର ଏକ "ପର୍ଯ୍ୟାପ୍ତ-କାରଣ" ମତ ମଧ୍ୟ ରହିଛି । ମଣିଷ ଉଦ୍ଦେଶ୍ୟ ପରିଚାଳିତ ହୋଇ ସବୁ କାର୍ଯ୍ୟ କରେ । କିନ୍ତୁ କାର୍ଯ୍ୟ କରିବାର ଏଇ ପର୍ଯ୍ୟାପ୍ତ କାରଣ ସବୁବେଳେ ଯୁକ୍ତି ଭିତ୍ତିକ ନ ହୋଇ ପାରେ ।।୪୦।। ଏହାର ଉତ୍ତରରେ ବାହାରିଥିଲା "ଶୁଦ୍ଧ ତର୍କ ବୁଦ୍ଧି ସମୀକ୍ଷା" ।।୪୧।। ଆମେ ଯେଉଁ ଜ୍ଞାନ ଆହରଣ କରୁ ତାର ସବୁ ଅଂଶ ଯୁକ୍ତିର ଆରୋହ ଉପପାଦନ ପ୍ରଣାଳୀଦ୍ୱାରା ଅନୁଭୂତିରୁ ନିର୍ଣ୍ଣୟ କରି ହେବନାହିଁ । ଅନୁଭବ ନିରପେକ୍ଷ ଜ୍ଞାନ ବି ସମ୍ଭବ । ଏହାକୁ ପ୍ରାଗନୁଭବିକ ବା ସହଜ ଲବ୍‌ଧ ଜ୍ଞାନ ।।୪୨।। କୁହାଯାଏ । ଜ୍ଞାନର ଅପର ଅଂଶ ଇନ୍ଦ୍ରିୟାନୁଭୂତିର ଅନୁଶୀଳନ

---

( 37 ) Aristotle [B. C 384-322]--the appetitive-part [the other part is vegetative] of the irrational part of the soul is to some degree rational when reason approves of it.

( 38 ) Hobbes [ 1588-1679 ];—

( 39 ) Hegel [ 1770-1831 ]—Reason is the conscious certainty of being all reality.

( 40 ) Leibniz [ 1646-1679 ] Principle of sufficient reason.

( 41 ) Kant [ 1724-1804 ]—The critique of pure reason.

( 42 ) Apriori Knowledge.

ଓ ବିଶ୍ଳେଷଣ ଦ୍ୱାରା ଲବ୍‌ଧ ହୁଏ । ତାହାକୁ ଅନୁଭବସିଦ୍ଧ ଜ୍ଞାନ କୁହାଯାଏ ।।୪୩।।

ବାସ୍ତବ ସମ୍ବନ୍ଧରେ ଜ୍ଞାନ ଆହରଣ କରିବାର ବିଭିନ୍ନ ପ୍ରଣାଳୀ ସମ୍ବନ୍ଧରେ ଉପରୋକ୍ତ ଭାବଧାରା ଗୁଡ଼ିକର ଏକ ସ୍ୱତନ୍ତ୍ର ତାତ୍ପର୍ଯ୍ୟ ରହିଛି । ବିଜ୍ଞାନ ଯୁଗର ଅଭ୍ୟୁଦୟ ପରେ ପ୍ରାୟୋଗିକ କ୍ଷେତ୍ରରେ, ଚିନ୍ତାରାଜିରେ ଓ ସଂସ୍କୃତି କ୍ଷେତ୍ରରେ ଯେଉଁ ସବୁ ବିଭିନ୍ନ କ୍ରିୟା ପ୍ରତିକ୍ରିୟା ସୃଷ୍ଟି ହୋଇଥିଲା, ତାହା ବିଭିନ୍ନ ସମୟରେ ଉପରୋକ୍ତ ଭାବଧାରା ମଧ୍ୟରୁ ଏକ ବା ଏକାଧିକ ଭାବଧାରାକୁ ଆଶ୍ରୟ କରି ଗଢି ଉଠିଥିଲା ଏବଂ ସଂସ୍କୃତି ଓ ସାହିତ୍ୟ କ୍ଷେତ୍ରରେ ଏହି ପ୍ରତିକ୍ରିୟାର ବିକାଶ ଧାରାରେ ସେହି ହେତୁ ବିଭିନ୍ନ ସମୟରେ କେତେକ ବିଶେଷ ବିଭାବ ପରି ଲକ୍ଷିତ ହୋଇଥିଲା ।

ସପ୍ତଦଶ ଶତାବ୍ଦୀରେ ବିଜ୍ଞାନର ଅଭ୍ୟୁଦୟ ଯୋଗୁ ଗଣିତ ଶାସ୍ତ୍ରର ମର୍ଯ୍ୟାଦା ଖୁବ୍ ବେଶୀ ବଢି ଯାଇଥିଲା । ସେହି କାରଣରୁ ଏହି ଶତାବ୍ଦୀର ଶେଷଭାଗକୁ କେତେକ "ଯୁକ୍ତିର ଯୁଗ" ।।୪୪।।ବୋଲି ନାମିତ କରିଥିଲେ । ଯୁକ୍ତିର ସାହାଯ୍ୟରେ ବହୁତ କିଛି ହାସଲ କରାଯାଇ ପାରିଥିଲା ଏବଂ ଆଶା କରାଯାଇଥିଲା ଯେ "ନୀତି,' ଓ "ମୂଲ୍ୟବୋଧ" ପ୍ରଭୃତି କ୍ଷେତ୍ର ଯେଉଁଠି ଅନେକ କିଛି ଅସ୍ପଷ୍ଟ ଅଛି, ସେ କ୍ଷେତ୍ରର ସମସ୍ୟା ଗୁଡ଼ିକ ମଧ୍ୟ ଯୁକ୍ତି ସାହାଯ୍ୟରେ ସମାଧାନ କରାଯାଇ ପାରିବ ।।୪୫।। ଯୁକ୍ତିର ଏହି ଚକ୍ରବର୍ତ୍ତିତା କିନ୍ତୁ ସମାଲୋଚକ, କବି ଓ ଭାବ ପ୍ରବଣ ଲୋକଙ୍କ ମଧ୍ୟରେ ପୂର୍ବାପର ସ୍ୱୀକୃତ

---

( 43 ) Empirical knowledg.e

( 44 ) Age of reason

[ 45 ] ଏହି ସମୟରେ ବୋଲିଙ୍ଗବ୍ରୋକ [ ୧୬୭୮-୧୭୫୧ ] ଓ ପାଲ [ ୧୭୪୩-୧୮୦୫ ] କହୁଥିଲେ ଯେ ମଣିଷ ଗୋଟିଏ "ଘଣ୍ଟା" ପରି ଏକ ସ୍ୱୟଂସଂପୂର୍ଣ୍ଣ ସୃଷ୍ଟି । ଏହି ସ୍ୱୟଂ ସଂପୂର୍ଣ୍ଣତା ମଧ୍ୟରେ ଇଶ୍ୱରଙ୍କ ଉଦ୍ଦେଶ୍ୟ ନିହିତ । ଫରାସୀ ଗାଣିତିକ ଲାପଲେସ, [ ୧୭୪୯-୧୮୨୭ ] କହୁଥିଲେ ଯେ

ଦୋଇ ପାରି ନଥିଲା । ଯୁକ୍ତିକୁ ଗୌଣ ସ୍ଥାନ ଦେଉଥିବା ଏବଂ ଯୁକ୍ତିର ସାର୍ବ-ଭୌମତ୍ୱର ପ୍ରତିଦ୍ୱନ୍ଦ୍ୱୀ-ରୂପୀ ଏକ ମତ ବା ନନ୍ଦନ-ତତ୍ତ୍ୱ ସେମାନେ ଗ୍ରହଣ କରି ନେବାକୁ ପ୍ରସ୍ତୁତ ଥିଲେ । ଖୋଜିବା ମୁତାବକ ଏଇପରି ଏକ ତତ୍ତ୍ୱ ମଧ୍ୟ ସେମାନଙ୍କୁ ମିଳି ଯାଇଥିଲା । ମଣିଷର ଏକ ଅନ୍ତର୍ନିହିତ ସାମର୍ଥ୍ୟ ବା ସଂବେଦନ-ସଚେତନାର ପ୍ରକାଶ ରୂପରେ ଆସିଥିଲା ଏଇ ତତ୍ତ୍ୱ ଓ ଏହାକୁ କୁହାଯାଇଥିଲା ଅବବୋଧ ବା [Sensibility] ॥୪୬॥ ପ୍ରାୟ ଠିକ ଏହି ସମୟରେ ଫ୍ରାନସ୍‌ର ଅଭିଜାତ ବା ସମ୍ଭ୍ରାନ୍ତ ଲୋକମାନେ "ସଂବେଦନ-ପ୍ରବଣତା"ର ବହୁତ ପସନ୍ଦ କରୁଥିଲେ ଏବଂ ବିଶେଷ କରି "ସହାନୁଭୂତି" ରୂପକ ସଂବେଦନା ପ୍ରତି ସେମାନଙ୍କର ଏକ ସ୍ୱତନ୍ତ୍ର ନଜର ବା ଦରଦ ଥିଲା । ଏହାକୁ ସେମାନେ "La sensebilite" ବୋଲି କହୁଥିଲେ ॥୪୭॥

---

ଆମେ ସଂପୂର୍ଣ୍ଣଭାବେ "ବର୍ତ୍ତମାନକୁ" ଜାଣି ପାରିଲେ "ଭବିଷ୍ୟତକୁ ସଂପୂର୍ଣ୍ଣଭାବେ ଜାଣି ପାରିବୁ । ତାଙ୍କର କହିବାର କଥା ଥିଲା-ଯଦି ବିଶ୍ୱର ପ୍ରତ୍ୟେକ ପରମାଣୁର ସ୍ଥିତି ଓ ଗତି ଜାଣି ହେବ ତା' ହେଲେ ଭବିଷ୍ୟତର ପ୍ରତ୍ୟେକ ଘଟଣାବଳୀ ଅଙ୍କ କଷି କହି ଦେଇ ହେବ । ଏ କଥାର ତାତ୍ପର୍ଯ୍ୟ ଏଇଆ ଯେ—"ଭବିଷ୍ୟତ" ଏକ deterministic ଧାରା । ଏହା ସେ ବିଶ୍ୱାସ କରୁଥିଲେ । ପୃଥିବୀ ଗୋଟିଏ ବିରାଟ ଯନ୍ତ୍ର ମାତ୍ର ।

ପ୍ରାୟ ଠିକ୍, ଏହି ସମୟରେ ଉଇଲିୟମ ବ୍ଲେକ [ ୧୭୫୭-୧୮୨୭ ] କହୁଥିଲେ—"To be an Error and to be cast out is a part of God's design".

[ 46 ] A dictionary of modern critical terms—Edited by Roger Fowler, Routledge and Kegan Paul, London and Boston, page 169.

[ 47 ] ୯-ପୃ ୬୫୧ ॥

"La sensebilite"—meaning proneness to emotion, more particularly to the emotion of sympathy.

୧୬୫୧ ମସିହାରେ ଦାର୍ଶନିକ ହବ୍‌ସ [ ୧୫୮୮-୧୬୭୨ ]ଙ୍କ "ଲେଭିଆଥାନ୍" ପୁସ୍ତକ ପ୍ରକାଶିତ ହୋଇଥିଲା । ସେତେବେଳକୁ ଗାଲିଲିଓ [ ୧୫୬୪-୧୬୪୨ ]ଙ୍କ ତତ୍ତ୍ୱ ସବୁ ପ୍ରଚାରିତ ହୋଇଛି ଓ ନିଉଟନ [ ୧୬୪୨-୧୭୨୭ ]ଙ୍କ ଯୁଗ ଆରମ୍ଭ ହୋଇନାହିଁ । କିନ୍ତୁ ଏହି ସମୟକୁ ଜ୍ଞାନ-ଆହରଣରେ ଯୁକ୍ତିର ଆସନ ପ୍ରାଧାନ୍ୟ ଲାଭ କରି ସାରିଲାଣି ଏବଂ ଇନ୍ଦ୍ରିୟାନୁଭୂତି ଓ ପର୍ଯ୍ୟବେକ୍ଷଣର ଗୁରୁତ୍ୱ ମାନସିକ ପ୍ରକ୍ରିୟାର ଅଙ୍ଗ ରୂପେ ଅଚେତନ ସ୍ୱୀକାର ଲାଭ କରି ସାରିଲାଣି । ଏହି ସମୟରେ ହବ୍‌ସ ତାଙ୍କର "ଲେଭିଆଥାନ" ପୁସ୍ତକରେ କହିଲେ ଯେ ଇନ୍ଦ୍ରିୟ ଅନୁଭୂତି ମଣିଷର ସବୁ ଭାବନାର ମୌଳିକ ସତ୍ତା । ଆଖି ବୁଜିଦେଲେ ବା ବସ୍ତୁଟିକୁ ଆଖି ଆଗରୁ କାଢି ନେଲେ, ଆମେ ଯାହା ଦେଖୁଛୁ, ତା'ର ଏକ ପ୍ରତିଛବି ମାନସ ପଟରେ ରହିଯାଏ; ଯଦିଓ ଯାହା ଦେଖିଛି, ଏହି ପ୍ରତିଛବି ତାଠାରୁ ଅସ୍ପଷ୍ଟ । ଏହାକୁ "କଳ୍ପନା" ବା "ଅନୁମାନ" କୁହାଯାଏ ।।୪୮।। ସୁତରାଂ "କଳ୍ପନାକୁ" ଜୀର୍ଣ୍ଣ ଇନ୍ଦ୍ରିୟାନୁଭୂତି ବା ଅବକ୍ଷୟୀ ଇନ୍ଦ୍ରିୟାନୁଭୂତି କୁହାଯାଇ ପାରେ, ଯାହା ସୁପ୍ତ ବା ଜାଗ୍ରତ ଅବସ୍ଥାରେ ମାନବଠାରେ ଦେଖାଯାଏ । (୯)

"ଇନ୍ଦ୍ରିୟାନୁଭୂତିର ଜୀର୍ଣ୍ଣ ଅବସ୍ଥା"—ଏହା ଯେପରି ଇନ୍ଦ୍ରିୟାନୁଭୂତିର ସାର୍ବଭୌମତା ବିରୁଦ୍ଧରେ ପ୍ରଥମ ପରୋକ୍ଷ ବିଦ୍ରୋହ ।

ମଣିଷର ମନକୁ ଆରିଷ୍ଟଟଲଙ୍କ ଭାଷାରେ ଯଦି ଏକ ଅଲେଖା ସିଲଟ [ Tabula rasa ] ବୋଲି ଧରି ନିଆଯାଏ, ତେବେ ଦାର୍ଶନିକ ଲକ୍ [ ୧୬୩୨-୧୭୦୪ ] ସେହି ଅଲେଖା ସିଲଟରେ ଲେଖା ହେବାର ପ୍ରଣାଳୀ ସମ୍ବନ୍ଧରେ ତାଙ୍କର ତତ୍ତ୍ୱ ପ୍ରଚାର କରି ଯାଇଥିଲେ ବୋଲି କୁହାଯିବ । ଅଭିଜ୍ଞତାର ହରଫରେ ଲେଖାହୁଏ ମନର ଅଲେଖା ସିଲଟ । ମଣିଷର

---

[ 48 ] Imagination and Fancy.

[ 49 ] Locke—Empiricism [ Essay concerning Human understanding-1690 ]

ଅଶେଷ, ଅକଳନ କଳ୍ପନାର ବିଷୟବସ୍ତୁ, ଯୁକ୍ତି ଓ ଜ୍ଞାନର ସମସ୍ତ ଉପାଦାନ ଆସେ ଅଭିଜ୍ଞତାରୁ । ମଣିଷର ଭାବରାଜି ଗୁଡ଼ିକ ଅନ୍ତର୍ନିହିତ ନୁହେଁ । ଏହାର ଉତ୍ସ ଦୁଇଟି-ଇନ୍ଦ୍ରିୟାନୁଭୂତ ଓ ମନନ [ Reflection ] । ଏହି "ମନନକୁ"କୁ ଆନ୍ତରିଣ ଇନ୍ଦ୍ରିୟାନୁଭୂତ କୁହାଯାଇ ପାରେ, କାରଣ ଏହାଦ୍ୱାରା ମାନସିକ ପ୍ରକ୍ରିୟାଗୁଡ଼ିକ ସମ୍ବନ୍ଧରେ ଅନୁଭୂତ ବା ସଚେତନତା ଆସେ । "ଭାବ" ଗୁଡ଼ିକ ମୌଳିକ ମତ୍ତ୍ୱ ଓ ଏଗୁଡ଼ିକ ସରଳ ବା ଯୌଗିକ ହୋଇ ପାରେ । ସରଳ ଭାବ ଗୁଡ଼ିକ ଏକ ଅନୁକ୍ରମରେ ବା ଏକତ୍ର ପରସ୍ପର ସମ୍ମିଳିତ ବା ସଂଯୁକ୍ତ ହୋଇଥାଏ [ ୪୯-କ ] ବସ୍ତୁ ଗୁଡ଼ିକ ଯେଉଁ ପ୍ରକାରରେ ଉପଲବ୍ଧ ହୁଏ, ତହିଁରେ ବସ୍ତୁ ମଧ୍ୟସ୍ଥ ଓ ତାଠାରୁ ଅବିଚ୍ଛିନ୍ନ କେତେକ ଗୁଣ ଯଥା—[ବସ୍ତୁତ୍ୱ ଆୟତନ ଆକାର ଇତ୍ୟାଦ ) ଥାଏ । ସେହିପରି ଆଉ କେତେକ ଗୁଣ ବସ୍ତୁ ମଧ୍ୟରେ ନିହିତ ନଥାଏ, ଅଥଚ ତାହା ସୃଷ୍ଟି କରିପାରିବାର ସମ୍ଭାବନା ବସ୍ତୁ ମଧ୍ୟରେ ନିହିତ ଥାଏ । [ ଯଥା—ରଙ୍ଗ ଶବ୍ଦ ଗନ୍ଧ ସ୍ୱାଦ ଇତ୍ୟାଦ ) । ସେଗୁଡ଼ିକୁ ଯଥାକ୍ରମେ ପ୍ରାଥମିକ, ମୌଳିକ ବା ପ୍ରତ୍ୟକ୍ଷ ଗୁଣ ଏବଂ ପରୋକ୍ଷ ଗୁଣ କୁହାଯାଏ । ଅନ୍ୟ କଥାରେ ସେ ଗୁଡ଼ିକୁ ଆଦ୍ୟଗୁଣ ଓ କବିଗୁଣ ବୋଲି ମଧ୍ୟ କୁହା ଯାଇପାରେ । ଲକ୍‌ଙ୍କର ଏହି ଆଦ୍ୟଗୁଣ ଓ କବିଗୁଣ [ ୪୯-ଖ ]ରୁ ଆଦ୍ୟଭାବ ଓ କବିଭାବ [ ୪୯—ଗ ] ଓ ପରବର୍ତ୍ତୀ କାଳରେ ଆଦ୍ୟକଳ୍ପନା ଓ କବିକଳ୍ପନା [ ୪୯-ଘ ] ର ଚିନ୍ତା ଆସିଥିଲା [ ୪୯ ଙ ] ।।

---

( କ ) Association of ideas.

( ଖ ) Primary and Secondary qualities.

( ଗ ) Primary and Secondary ideas.

( ଘ ) Primary and Secondary imagination.

( ଙ ) କେତେକ ପ୍ରତିଭାଷା ଡଃ କ୍ଷେତ୍ରବାସୀ ନାୟକ ଙ୍କ "ଭାରତୀୟ କାବ୍ୟତତ୍ତ୍ୱ" ପୁସ୍ତକ, ୧୯୮୧, ପୃ ୧୫, ୩୫ରୁ ଗୃହୀତ ।

ତା'ହେଲେ ଜାଣ୍ଡି ଇନ୍ଦ୍ରିୟାନୁଭୂତ ନୁହେଁ, ପରୋକ୍ଷଭାବ ବା ଜଟିଳଭାବ- ଯାହା ବସ୍ତୁ ମଧ୍ୟରେ ନିହିତ ନଥାଏ ଅଥଚ ସେଗୁଡ଼ିକ ସୃଷ୍ଟି କରି ପାରିବାର ସମ୍ଭାବନା ବା କ୍ଷମତା ବସ୍ତୁ ମଧ୍ୟରେ ଥାଏ, ସେହି ପରୋକ୍ଷ ଭାବ ଲକ୍‌ଙ୍କ ନିର୍ଦ୍ଦେଶିତ ଭାବ-ସମ୍ମିଳନର ନିୟମ ଅନୁଯାୟୀ ଅକଳନ ନୂତନ ଭାବ ସୃଷ୍ଟି କରିପାରେ ।

ଲକ୍, ଅର୍ଲ୍ ଅଫ ସାଫ୍‌ଟସ୍‌ବରୀଙ୍କ ପ୍ରାଇଭେଟ ସେକ୍ରେଟେରୀ ରୂପେ କାର୍ଯ୍ୟ କରିଥିଲେ । ୧୬୬୬ ଠାରୁ ସାଫ୍‌ଟସ୍‌ବରୀଙ୍କ ମୃତ୍ୟୁ ପର୍ଯ୍ୟନ୍ତ ଉଭୟଙ୍କ ମଧ୍ୟରେ ବନ୍ଧୁତା ଅକ୍ଷୁର୍ଣ୍ଣ ଥିଲା । ସାଫ୍‌ଟସ୍‌ବରୀ ତାଙ୍କର ଗୋଟିଏ ପୁସ୍ତକରେ ॥୫୦॥ ଉପରେ ବର୍ଣ୍ଣିତ ଯୁକ୍ତି-ପରିପନ୍ଥୀ ନୂତନ ଦ୍ୟୋତନାର ମୂଳଦୁଆ ସ୍ଥାପନ କରିଥିଲେ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ସେ କହିଲେ ଯେ-ଏକ ଅନ୍ତଃସ୍ଥ ନାନ୍ଦନିକ ଭାବ । ସାହାଯ୍ୟରେ ସମାଜର ନ୍ୟାୟ, ପ୍ରକୃତିର ସୌନ୍ଦର୍ଯ୍ୟ ଓ ଜଗତର ଧାରା ବା ଶୃଙ୍ଖଳା ବିଷୟରେ ଅବଧାରଣା କରିହେବ । ତାଙ୍କ ମତରେ ସୌନ୍ଦର୍ଯ୍ୟ ବସ୍ତୁ ମଧ୍ୟରେ ନଥାଏ । ତାହା ଥାଏ କଳାକାରୁ ମଧ୍ୟରେ । ଏହା ବସ୍ତୁରେ ନିହିତ ନଥାଏ । ଥାଏ ତାର ରୂପ ଓ ସୃଜନଶୀଳ କ୍ଷମତା ଭିତରେ ॥୫୧॥

---

[ 50 ] Characteristics of men, manners, Opinions, Times, [ 1708-11 ]

[ 51 ] The beautiful, the fair, the comely were never in the Matter, but in the Art and Design. Never in Body-itself, but in the Form and forming Power". Quoted in ୪୬ ପୃ ୧୬୦ ॥

ଅନୁସାଣ ନାନ୍ଦନିକ ଭାବ । ବିଜ୍ଞାନର ଅଭ୍ୟୁଦୟ ପରେ ଏହାହିଁ ଥିଲା ଚିନ୍ତାଜଗତକୁ ସପ୍ତଦଶ ଶତାବ୍ଦୀର ବିକଳ୍ପ ଅବଦାନ । ବିଜ୍ଞାନର ଅଭ୍ୟୁଦୟ ଓ ନାନ୍ଦନିକ ଭାବର ଅଭ୍ୟୁଦୟ–ଏହି ଯୁଗ୍ମଧାରା ବା ବସ୍ତୁତର ଗୋଟିଏ ଧାରାର ଏହି ଦୁଇ ସ୍ରୋତର ଅଭ୍ୟୁଦୟ ଯେପରି ମାନବ ମନରେ ଥିଲା ଏକ ସମ୍ପୂର୍ଣ୍ଣ ଉଚ୍ଛ୍ୱାସ ।

ସେଇ ଉଚ୍ଛ୍ୱାସର ରୂପ ଦେଖିବାକୁ ମିଳିଥିଲା 'ମହାନ ଓ ସୁନ୍ଦର" ରୂପରେ ।।୫୨।। ଖ୍ରୀଷ୍ଟୀୟ ତୃତୀୟ ଶତାବ୍ଦୀରେ ନଓ-ପ୍ଲାଟୋନିଜମ୍‌ର ପ୍ରବର୍ତ୍ତକ ପ୍ଲଟିନସ୍ [ ୨୦୪-୨୭୦ ] ଏକ ଅମୂର୍ତ୍ତ ସୌନ୍ଦର୍ଯ୍ୟ ବା ଏକ ପ୍ରକାରର ବୌଦ୍ଧିକ ସୌନ୍ଦର୍ଯ୍ୟର କଳ୍ପନା କରି ତାହାକୁ ଆତ୍ମାର ସ୍ୱରୂପ ସହ ତୁଳନା କରିଥିଲେ । ତାଙ୍କର ସମସାମୟିକ ଲଞ୍ଜିନସ୍ ଏକ ପ୍ରକାରର "ବ୍ରହ୍ମାନନ୍ଦ" ଓ "ଦିବ୍ୟଉନ୍ମତ୍ତତା"ର କଳ୍ପନା କରିଥିଲେ ।।୫୩।। ଏହି ଅଭିଜ୍ଞତାରୁ ଜାତ ହୁଏ ଭାବରାଜି । କିନ୍ତୁ ଏହି "ଅଭିଜ୍ଞତା" ସବୁବେଳେ ଯୁକ୍ତିର ନିୟମ

---

[ 52 ] Edmund Burke [ 1729-97 ]

"A philosophical enquiry into the origin of our ideas of the Sublime and Beautiful"-1757.

[ 53 ] Plotinus on the Beautiful

Longinus on the sublime

ତାଙ୍କର ଲେଖାରେ "ପ୍ରେରଣା" ସମ୍ବନ୍ଧରେ ଏକ ମନନ ଦେଖିବାକୁ ମିଳେ । The theory of "possession" which lifted poet and audience out of themselves and produced the condition of "ecstasy" and "rapture", the Delphic rapture, the divine madness, the very breath of God breathed into his votaries".

ମାନେନାହିଁ । ତେଣୁ'ଯୁକ୍ତି' କରିପଦ ନୁହେଁ । ସାହିତ୍ୟ ଓ କଳାରେ କଳ୍ପନା ବିଳାସରେ ଓ ରୁଚି ବୋଧରେ ଏତେ ବିଭିନ୍ନତା, ବ୍ୟାପକତା ଓ ବ୍ୟାପ୍ତି ଆସେ କପରି ? ଏହାର ଉତ୍ତର ଦେବାକୁ ଯାଇ "ବର୍କ" କହିଥିଲେ ଯେ ଏକ ଅବବୋଧ [ Sensibililty ] ହିଁ ଏହାର କାରଣ । କେତେକଙ୍କର ଭାବ ପ୍ରତି ଅଧିକ ପ୍ରବଣତା ଥାଏ । ଭାବ ପ୍ରତି ପ୍ରବଣତାହିଁ ଏକ ପ୍ରକାରର ଅବବୋଧ ଯାହା ଜୀବନ ସମ୍ପର୍କରେ ଅଧିକ ଜ୍ଞାନ, ବ୍ୟାପକ ଜ୍ଞାନ ଓ ସମୃଦ୍ଧ ଜ୍ଞାନ ଆଣିଦିଏ, ଏବଂ ଯେଉଁ ଜ୍ଞାନକୁ ଭିତ୍ତି କରି କଳ୍ପନାବିଳାସ ସମ୍ଭବ ହୁଏ । ପୁଣି ଏଇ ଅବବୋଧର ବିକାଶରେ କଳ୍ପନା କପରି ଭାବରେ ରୂପଗ୍ରହି କରେ ?? ସହାନୁଭୂତି ଏଇ ଅବବୋଧର ଏକ ମୁଖ୍ୟ ଦିଗ । କଳ୍ପନାର ଏକ "ବ୍ରହ୍ମାନନ୍ଦ ଭାବ" ଏହାର ଅନ୍ୟ ଏକ ଦିଗ । ଏଇ ଅବବୋଧହିଁ ଏକ ସାମର୍ଥ୍ୟ, ଯାହା କଳ୍ପନାକୁ ଶୀର୍ଷକୁ ନେଇଯାଏ ଏବଂ ଯାହାକୁ ଆମେ "ମହାନ" କହିପାରୁ ॥୫୪॥

ପ୍ରବଣତା ଆଉ ଅବବୋଧ । ଏହା ସବୁ ନିଗଡ଼, ସବୁ ବନ୍ଧନ ସବୁ ଶୃଙ୍ଖଳାବୋଧ ଅତିକ୍ରମ କରିଯିବାର ପ୍ରଥମ ଅଚେତନ ପଦକ୍ଷେପ । ଅଭିଜ୍ଞତା ସବୁବେଳେ ଯୁକ୍ତି ଅନୁସାରେ ପରିଚାଳିତ ହେଉନାହିଁ । ଉପଲବ୍ଧ ଜ୍ଞାନ ସବୁବେଳେ ଯୁକ୍ତିଭିତ୍ତିକ ହେଉନାହିଁ । ତେଣୁ ବନ୍ଧନରୁ ମୁକ୍ତି ଲୋଡା । ମାନବ ଜାତି ବିଜ୍ଞାନ ଓ କଳାରୁ କୌଣସି ଲଭ ପାଇ ନାହିଁ ॥୫୫॥ ମଣିଷ ଅନ୍ତ-

---

[ 54 ] Adam Smith [ 1723-90 ]—Theory of Moral Sentiments [ 1759 ]. [ ୪୭ ପୃ ୧୭୦ ]

( 55 ) Academy of Digon ଗୋଟିଏ ପ୍ରବନ୍ଧ ପ୍ରତିଯୋଗିତା କରାଇଥିଲେ । ପ୍ରବନ୍ଧର ବିଷୟବସ୍ତୁ ଥିଲା "Have the arts and and sciences confirmed benefits on mankind" । ଦାର୍ଶନିକ ରୁଷୋ [ ୧୭୧୨-୭୮ ] ଏହାକୁ ବିରୋଧକରି ଏକ ପ୍ରବନ୍ଧ ଲେଖିଥିଲେ ଓ ଏହି ପ୍ରତିଯୋଗିତାରେ ପ୍ରଥମ ସ୍ଥାନ ଅଧିକାର କରିଥିଲେ [ ୧୭୫୦ ] ।

ନିହିତ ଭାବରେ "ଭଲ,' ଏବଂ ଅନୁଷ୍ଠାନ ଗୁଡ଼ିକ କରିଆରେ ସେ "ଭେଲ" ହୋଇ ଯାଉଛ ॥୫୬॥ ତେଣୁ "ଯୁକ୍ତି" ନୁହେଁ, ହୃଦୟର ପ୍ରବଣତାହିଁ ଠିକ୍ । ମଣିଷ ସ୍ୱାଧୀନ ଭାବରେ ଜନ୍ମ ହୋଇଥିଲ, ବର୍ତ୍ତିମାନ ଦାସତ୍ୱ ଫାଶରେ ସବୁଠାରେ ବନ୍ଧା ହୋଇ ରହିଛ । ତେଣୁ ଏହି ଦାସତ୍ୱ ବନ୍ଧନରୁ ମୁକ୍ତି ଆବଶ୍ୟକ । ଆବଶ୍ୟକ ସ୍ୱାଧୀନତା ॥୫୭॥ ଆବଶ୍ୟକ ହୃଦୟର ପ୍ରବଣତା ଆଉ ସ୍ୱାଧୀନତାର ଜୁଆର । ଏହା ପରେ ପରେ ଆସିଥିଲ 'କାଣ୍ଟ"ଙ୍କ ଶୁଦ୍ଧ ତର୍କ ସମୀକ୍ଷା'—ପ୍ରାଗନୁଭବକ ଆଉ ଅନୁଭବ—ସିଦ୍ଧ ଜ୍ଞାନର ଧାରଣା ।

ଏହି ନୂତନ ଦ୍ୟୋତନା ଆଉ ପ୍ରବଣତା, ଏହି ନୂତନ ଅବବୋଧ ହିଁ ରମ୍ୟବାଦୀ ଆନ୍ଦୋଳନର ଜନକ ଏବଂ ସାଧାରଣତଃ ରୁସୋଙ୍କୁ ଏହାର ଜନକ ଭାବରେ ସମ୍ମାନ ଦିଆ ଯାଇଥାଏ । ଏକ ସମ୍ବେଦନଶୀଳ ପ୍ରବଣତା, ପ୍ରଚଳିତ ନୈତିକ ଓ ନାନ୍ଦନିକ ମାନ ଓ ମୂଲ୍ୟବୋଧ ବିରୁଦ୍ଧରେ ବିଦ୍ରୋହ, ଗତାନୁଗତିକତା ପ୍ରତି ଅବଜ୍ଞା, ସାମାଜିକ ନିବ୍ରପତ୍ତା ଜନିତ କ୍ଲାନ୍ତିର ଅବସାନ ପାଇଁ ନୂତନ ପଥ ନିର୍ଦ୍ଦେଶ, ଏକ ଉଚ୍ଛ୍ୱାସଭରା ଆଶ୍ଚର୍ଯ୍ୟଜନକ ନୂତନତା ଓ ଚମତ୍କାରିତାର ସନ୍ଧାନ, ଗଢ଼ି ଉଠୁଥିବା ଶିଳ୍ପ—ସମାଜ ବିରୁଦ୍ଧରେ ସ୍ୱର ଉତ୍ତୋଳନ ପ୍ରୟୋଗବାଦୀ ମୂଲ୍ୟବୋଧ ପରିବର୍ତ୍ତେ ନାନ୍ଦନିକ ମୂଲ୍ୟବୋଧର ସନ୍ଧାନ, ନୂତନ ରୁଚିର ଅନ୍ୱେଷଣ, ସାମାଜିକ ବନ୍ଧନ ବିରୁଦ୍ଧରେ ବ୍ୟକ୍ତି-ପ୍ରବୃତ୍ତିର ବିଦ୍ରୋହ, ସାମାଜିକ ଆଚୃର ବ୍ୟବହାର ଓ ନୈତିକତାରୁ ମାନବ

---

( 56 ) ରୁସୋଙ୍କର ଏହି ମତ Doctrine of Original sin and salvation ର ବିରୋଧ ମତବାଦ ।

( 57 ) ( କ ) Rousseau-Social Contract-1762. "Man is born free and everywhere he is in chains" Rejection of reason in favour of heart-reminiscent of Pascal who said—"The heart has its reasons, of which reason is ignorant"

ବ୍ୟକ୍ତିତ୍ୱର ମୁକ୍ତି—ଏହାହିଁ ଥିଲା ରମ୍ୟବାଦୀ ଆନ୍ଦୋଳନର ଉଦ୍ଦେଶ୍ୟ ଓ ଭୂମିକା ॥୫୮॥ ଏହାର ପୃଷ୍ଠଭୂମିରେ ଥିଲା ଶିଳ୍ପ ବିପ୍ଳବର ପ୍ରାଥମିକ ଉଚ୍ଛ୍ୱାସ ସାଙ୍ଗକୁ ପ୍ରାଥମିକ ବିପର୍ଯ୍ୟୟ, କୁଟୀରଶିଳ୍ପ ଗୁଡ଼ିକର ପତନ, ସହରର ଆକର୍ଷଣରେ ଗାଁ ଲୋକ ମାନଙ୍କର ସହରକୁ ଆଗମନ ଓ ତତ୍‌ଜନିତ ସାମାଜିକ ପରିବର୍ତ୍ତନ ଓ ବିସ୍ଫୋରଣ, ନୂତନ ସାମାଜିକ ପରିସ୍ଥିତିରେ ଜାତି ଓ ଶ୍ରେଣୀ ଗତ ବିଭେଦ ଅପସାରଣ, ରାସ୍ତା ତିଆରି, ଘରବାଡ଼ି ନିର୍ମାଣ, ଆଲୋଚନା କ୍ଷେତ୍ର ଓ ଚିନ୍ତା ରାଜ୍ୟରେ ନୂତନ ନୂତନ ଦିଗନ୍ତର ସୃଷ୍ଟି, ମାନବ ମାନବ ମଧ୍ୟରେ, ଗୋଷ୍ଠୀ ଗୋଷ୍ଠୀ ମଧ୍ୟରେ, ଅନୁଷ୍ଠାନ ଅନୁଷ୍ଠାନ ମଧ୍ୟରେ ପରସ୍ପରର ବିଚ୍ଛିନ୍ନତାର ଅବସାନ ଏବଂ ଏକ ସୁପ୍ତ ଅବା ଘୁମନ୍ତ ସମାଜ ଉପରେ ବିଜ୍ଞାନର ପ୍ରାୟୋଗିକ ବିଦ୍ୟା ସମ୍ଭୂତ "ପରିବର୍ତ୍ତନ" ପ୍ରବାହର ପ୍ରତିକ୍ରିୟା ।

ଏହି ସମୟରେ "ଯୁକ୍ତିକୁ" ରକ୍ଷା କରିବା ପାଇଁ ଅବଶ୍ୟ କିଛିଟା ଚେଷ୍ଟା କରାଯାଇ ଥିଲା । କିନ୍ତୁ ତା ବେଶୀ ଦିନ ସ୍ଥାୟୀ ହେଲା ନାହିଁ । ଇନ୍ଦ୍ରିୟାନୁଭୂତ ଜ୍ଞାନର ଉପରିସ୍ତର ନୁହେଁ, ଏହା ମଧ୍ୟବର୍ତ୍ତୀ ଏକ ବିଭବ ରୂପେ ଏକ "ମହିମାମୟୀ ଯୁକ୍ତି"କୁ କିଛି ଦିନ କଳ୍ପନା କରାଯାଇ ଥିଲା ॥୫୯॥ ଏହି ମହିମାମୟୀ

---

( ଖ ) From 1750 to 1794 the heart spoke louder and louder; at last Thermidor put an end, for a time, to its ferocious pronouncements, so far at least as France was concerned. Under Napoleon heart and head were alike silenced"—ପୃ ୭୭୭ ॥

॥୫୮॥ ବର୍ଟ୍ରାଣ୍ଡ ରସେଲଙ୍କ "ପାଶ୍ଚାତ୍ୟ ଦର୍ଶନର ଇତିହାସ" ପୁସ୍ତକର Chapter XVIII [Romantic movement]ରେ ସୂତ୍ରପାତ ଓ ତାତ୍ପର୍ଯ୍ୟ ସମ୍ବନ୍ଧରେ ବିଶେଷ ଭାବରେ ଆଲୋଚନା କରାଯାଇଛି ।

॥ ୫୯ ॥ Reason in her most exalted mood.

ବିଷୟବସ୍ତୁ ବିଭିନ୍ନ ସମୟରେ ନାନା ଭାବରେ ନାମିତ କରାଯାଇଥିଲା ମଧ୍ୟ— ଯେମିତି କଳ୍ପନା, ପ୍ରତ୍ୟକ୍ଷ, ଦୂରଦୃଷ୍ଟି ଇତ୍ୟାଦ ଓ ଏ ସବୁର ଉତ୍ସ ଥିଲା ପ୍ରେରଣା, ଆନନ୍ଦ, ଆହ୍ଲାଦ ଇତ୍ୟାଦ ।।୬୦।।

ଏଇ ଅନ୍ତର୍ଗଣ ନାନ୍ଦନିକ ଭାବ ଓ ଆହ୍ଲାଦର ସ୍ୱରୂପ କଅଣ !! ଲକ୍‌ଙ୍କର ଭାବଧାରାର ଆଉ ଟିକିଏ ଆଗକୁ ଯାଇ ଜୋସେଫ ଆଡ଼ିସନ୍ [୧୬୭୨-୧୭୧୯] ଆଦ-କଳ୍ପନା ଓ କବ-କଳ୍ପନାର ଧାରଣା ଆଣିଲେ । ସେ କହିଲେ ଯେ କଳ୍ପନା-ପ୍ରସୂତ "ଆହ୍ଲାଦ" ଦ୍ୱିବିଧ । ପ୍ରଥମଟି କଳ୍ପନାର ପ୍ରାଥମିକ ବା ପ୍ରତ୍ୟକ୍ଷ ଆହ୍ଲାଦ । ଦ୍ୱିତୀୟଟି ପରୋକ୍ଷ ଆହ୍ଲାଦ । ପ୍ରଥମଟି ବସ୍ତୁକୁ ପ୍ରତ୍ୟକ୍ଷ ଭାବରେ ଦର୍ଶନରୁ ଜାତ ହୋଇଥାଏ । ଦ୍ୱିତୀୟଟି ଯେତେ-ବେଳେ ଦୃଶ୍ୟ-ମାନ ବସ୍ତୁଟି ଚକ୍ଷୁ ସାମନାରେ ନ ଥାଏ, କେବଳ ଆମ ସ୍ମୃତିରେ ବା କଳ୍ପନାରେ ଏକ ମଧୁର ସମନ୍ୱୟର ଚିନ୍ତା ବା ଭାବ ଆକାରରେ ପ୍ରତିଭାତ ହୁଏ, ସେତେବେଳେ ଯେଉଁ ଆହ୍ଲାଦ ବା ଆନନ୍ଦ ମିଳେ, ତାହାକୁ କଳ୍ପନାର ପରୋକ୍ଷ ଆହ୍ଲାଦ କୁହାଯାଏ ।।୬୧।। ଏହି କଳ୍ପନା - ପ୍ରସୂତ ଆହ୍ଲାଦ ଇନ୍ଦ୍ରିୟ ଅନୁଭୂତି ପରି ସ୍ଥୂଳ ନୁହେଁ କି ଅବଧାରଣା [Understanding] ପରି ସୂକ୍ଷ୍ମ ନୁହେଁ ।

---

୬୦ । (i) Imagination, Intuition, Vision etc.

(ii) Inspiration, Intimation, Illumination, Rapture, Ecstasy etc.

୬୧ । Paper Nos. 411-421 "On the pleasures of the Imagination" appearing in "Spectator" in June and July of 1712.

ତାପରେ ଆମକୁ ଧାରଣା ଦିଆଯାଇ ଥିଲା ଯେ ବାଧାଯୁକ୍ତ କବିତା ମଣିଷ ଜାତିର ପ୍ରଗତିର ବାଧକ ହୁଏ ।।୬୨।। ସଂବେଦନା ବଳିଷ୍ଠ ହେଲେ ବାଧା ରହେ ନାହିଁ । ତେଣୁ ବଳିଷ୍ଠ ସଂବେଦନାର ସ୍ୱତଃସ୍ଫୁରଣ ହିଁ ସତ୍ୟ ।।୬୩।।

---

୬୨ । William Blake [1757-1827] in preface to Jerusalem (1804),—"Poetry Fetter'd, Fetters the Human Race".
—Quoted in the Making of Literature by R. A. Scott-James, page, 201.

୬୩ । (କ) "Spontancous overflow of powerful feelings"-Wordsworth[1770-1850]-Preface to Lyrical Ballads-1798 Quoted in the "Making of Literature"—page 20.

(ଖ) ଓ୍ୱାଡ଼ସ୍‌ଓ୍ୱାର୍ଥଙ୍କ ଲେଖାରେ "Abstract reason", "meddling intellect" ପ୍ରଭୃତି ଶବ୍ଦ ବ୍ୟବହାର ଦେଖିବାକୁ ମିଳେ । He is reported to have remarked [ August, 1829 ] that science waged war with and wished to extinguish imagination and he would much rather be a superstitious old man than a scientist ignorant of theology. [ Literary criticism-A short history, by William K. Wimstatt, Jr. and Cleanth Brooks, oxford & I. B. H. Publishing Co., Indian edition, 1964—page 413 ]

ଏହା ସାଙ୍କଲୁ ମର୍ହିଆ ମହି ମୁକ୍ତ ଓ ପ୍ରବଣତା ମଧ୍ୟରେ ସାମଞ୍ଜସ୍ୟ ବା ଏକତ୍ୱ ସ୍ଥାପନର ଉଦ୍ୟମ ବି ଦେଖା ଯାଇଥିଲା । ଉପଲବ୍ଧି ଓ ଅବଧାରଣା [Perception and Understanding] ମଧ୍ୟରେ ସାମଞ୍ଜସ୍ୟ ବା ଏକତ୍ୱ ସ୍ଥାପନର ପ୍ରଚେଷ୍ଟା— ଯାହାଦ୍ୱାରା ବାହ୍ୟିକ ଅନୁଭୂତିର ଆତ୍ମୀକରଣ ହୁଏ, ଅନ୍ତଃସ୍ଥ ପ୍ରବଣତାର ବାହ୍ୟିକ ଅନୁଭୂତି ସହ ସାମଞ୍ଜସ୍ୟ ସ୍ଥାପିତ ହୁଏ, ପ୍ରକୃତିର ସମସ୍ତ ଚଞ୍ଚଳ ପ୍ରବଣତା ଭାବରାଜିରେ ପରିଣତ ହୋଇଯାଏ, ଏବଂ ହୃଦୟର ସମସ୍ତ ଭାବରାଜି ପ୍ରକୃତିର ବୈଚିତ୍ର୍ୟ ସହ ଏକତ୍ୱବୋଧରେ ବାନ୍ଧି ହୋଇଯାଏ ।।୬୪।।

---

୬୪ । Coleridge [ 1772-1834 ]

Bridging the gulf between perception and understanding. To make the external internal, the internal external, to make nature. thought and thought nature. ["Making of literature"] ପୃ ୨୨୦, ୨୨୪]

ଅଷ୍ଟାଦଶ ଶତାବ୍ଦୀର ପ୍ରାରମ୍ଭରେ ବୈଜ୍ଞାନିକ ଭାବଧାରା ବିରୁଦ୍ଧରେ କାବ୍ୟର ସ୍ୱର ଉତ୍ତୋଳନ କ୍ଷୀଣ ଓ ମୁଖ୍ୟତଃ ଅନୁସନ୍ଧାନାତ୍ମକ ଥିଲା । ଏହି ଆନ୍ଦୋଳନ କ୍ରମେ ସମ୍ପୂର୍ଣ୍ଣ କାବ୍ୟିକ ସ୍ୱାଧୀନତା [poetic autonomy] ଆଡ଼କୁ ଅଗ୍ରସର ହୋଇଥିଲା । କାବ୍ୟିକ ସ୍ୱାଧୀନତା ସାଙ୍ଗକୁ କ୍ରମେ ଆସିଲା ଆନନ୍ଦ ବା ଆହ୍ଲାଦ ସମ୍ବନ୍ଧୀୟ ଭାବଧାରା ଓ ପରିଶେଷରେ "କଳାପାଇଁ କଳା" ତତ୍ତ୍ୱ । ଅଷ୍ଟାଦଶ ଓ ଊନବିଂଶ ଶତାବ୍ଦୀରେ ଏହି ଭାବଧାରା ଦୁଇ ଉପାୟରେ ଆତ୍ମପ୍ରକାଶ କରିଥିଲା । ପ୍ରଥମଟି ସୁଖାଭିମୁଖୀ ସ୍ୱାଧୀନତା [Hedonistically autonomic] । ଦ୍ୱିତୀୟଟି ଶିକ୍ଷାଭିମୁଖୀ ସ୍ୱାଧୀନତା [didactically autonomic] । ଏହା କୋଲେରିଜ, ଓ୍ୟାର୍ଡସ୍‌ଓ୍ୟାର୍ଥ, ଶେଲି, ଆରନୋଲଡ଼୍ ପ୍ରଭୃତିଙ୍କ ମଧ୍ୟ ଦେଇ ବିକଶିତ ହୋଇଛି । କାଣ୍ଟଙ୍କ The critique of practical reason" ଓ ଅନ୍ୟାନ୍ୟ ତତ୍ତ୍ୱ

ସପ୍ତଦଶ ଶତାବ୍ଦୀର ନୂତନ ମଡ଼େଲ ଦେଖିବାକୁ ଯାଇ ଦେଖିଲୁଁ ନୂତନ ବର୍ଣ୍ଣାଳୀ । ଏହାର ଏକ ପ୍ରାନ୍ତରେ ବାଇଗଣି ରଙ୍ଗ—ଯୁକ୍ତି ଆଉ ଯନ୍ତ୍ର । ଅପର ପ୍ରାନ୍ତରେ ନାଲି ରଙ୍ଗ-କଳ୍ପନା ଆଉ ଆହ୍ଲାଦ । ଏଇ ଦୁଇ ପ୍ରାନ୍ତ ମଧ୍ୟରେ ମୁଗସ୍ଥାରୁ ଆସିଥିଲା ନୂତନ ଅବବୋଧ ସମ୍ବନ୍ଧରେ ଧାରଣା ।

## ଗୃହ

ଏ ମୁଗସ୍ଥାରେ ପୁରାତନ ପରମ୍ପରା ପୁରାପୁରି ଶିକାର ହୋଇଗଲା ।

ପରମ୍ପରାର ବାଧ୍ୟତାରୁ ମୁକ୍ତି ମିଳିଲା । ପୁରୁଣା ଦାର୍ଶନିକ ତତ୍ତ୍ୱ, ଦେବତା-ମାନଙ୍କ ରମ୍ୟ ବିଳାସ ଓ ଧର୍ମର ରମ୍ୟ ବିଳାସରୁ ମୁକ୍ତି ମିଳିଲା । ପ୍ରକୃତରେ ରମ୍ୟ ବିଳାସରୁ ଆସିଥିଲା ଦୁଇଟି ଧାରା—ବିଜ୍ଞାନର ପରମ୍ପରା ବା ସଂସ୍କୃତି ଏବଂ ଏକ କାଳ୍ପନିକ ବା ସମ୍ବେଦନ-ପ୍ରବଣତାର ପରମ୍ପରା ବା ସଂସ୍କୃତି । ଏହା ତତ୍‌କାଳୀନ ସମାଜ ଓ ପରିସ୍ଥିତିରେ ବିଜ୍ଞାନ ଓ କଳା ମଧ୍ୟରେ ଏକ କୃତ୍ରିମ ବିରୋଧଭାବରେ ଦେଖା ଦେଇଥିଲା, ଯାହାକି ଏକ ପକ୍ଷରେ ବୈଜ୍ଞାନିକ-ବାମନ ଓ ଅପର ପକ୍ଷରେ ସାହିତ୍ୟିକ-ବାମନମାନଙ୍କ ଦ୍ୱାରା ଏକ ଅସଂପୂର୍ଣ୍ଣ ଓ ଅପରିଣତ ଅବବୋଧରୁ ସୃଷ୍ଟି ହୋଇଥିଲା ।।୬୫।।

---

ମଧ୍ୟରେ ତତ୍କାଳୀନ ଯୁଗର ଭାବଧାରା ସ୍ପଷ୍ଟଭାବେ ପ୍ରତିଫଳିତ । ଏହାଛଡ଼ା ଡି. କୁଇନ୍‌ସେଙ୍କ ଦ୍ୱାରା ୧୮୪୮ ମସିହାରେ ପ୍ରବର୍ତ୍ତିତ literature of knowledge ଓ literature of power ଜନିତ ଭାବଧାରା ଏ ସନ୍ଦର୍ଭରେ ଉଲ୍ଲେଖଯୋଗ୍ୟ [Literary Criticism-page— 425-426]

୬୫ । Scientific philistines and Literary philistines. —"The common sense of science"— J. Bronowski, Pelican 1960— page 49.

ଏହି ଦ୍ୱନ୍ଦ୍ୱ ବହୁଦିନ ପର୍ଯ୍ୟନ୍ତ ବିଭିନ୍ନ ରୂପରେ ଦେଖିବାକୁ ମିଳିଥିଲା । ଉଦାହରଣ ସ୍ୱରୂପ ଊନବିଂଶ ଶତାବ୍ଦୀର ତୃତୀୟ ଦଶକରେ—

ଏହି ନୂତନ ଅବବୋଧର ମୂଳ ଉତ୍ସ ହେଲା "ପରିବର୍ତ୍ତନ"ଶୀଳ ପରିସ୍ଥିତି ପ୍ରତି ସଚେତନତା । ନିଜର ଜୀବନ-କାଳ ମଧ୍ୟରେ ପରିସ୍ଥିତି ବଦଳି ଯାଉଛି । ପ୍ରକୃତି ବଦଳି ଯାଉଛି । ପ୍ରକୃତି ସହ ସଂପର୍କ ବଦଳି ଯାଉଛି । ମଣିଷ ମଣିଷ ସଂପର୍କର ପୁରୁଣା ଖିଅ ଅଡୁଆ ହୋଇ ଯାଉଛି । ନୂତନ ସଂପର୍କମାନ ସ୍ଥାପିତ ହେଉଛି ବା ନୂତନ ସଂପର୍କଗୁଡ଼ିକ ମଧ୍ୟରେ ଭାରସାମ୍ୟ ଆସି ପାରୁ ନାହିଁ । ପୁରାତନ ଅନୁଷ୍ଠାନ ଗୁଡ଼ିକ 'ପୁରୁଣା କାଳିଆ' ହୋଇ ଯାଉଛି । ପରିବର୍ତ୍ତନଶୀଳ ପରିସ୍ଥିତି ସହ ଖାପ ଖାଇ ପାରୁ ନାହିଁ । ନୂତନ ଅନୁଷ୍ଠାନ ଗଢ଼ି ଉଠି ନାହିଁ ବା ଯେଉଁ ସବୁ ଅନୁଷ୍ଠାନମାନ ମୁଣ୍ଡ ଟେକି

Science was making the infinite creative music of the universe into the dull clappering of a gigantic mill driven by the stream of chance and floating upon it, a mill, without architect and without miller, grinding itself to pieces, infact, a perpetuum mobile." [F. V. Hardenberg in his essay on "Christendom or Europe"—Literary Criticism, page 370 ]

ଥୋମାସ୍ ଲଭ୍ ପିକକ୍ [ ୧୭୮୫-୧୮୬୬ ] ଙ୍କର "The Four Ages of Poetry" ପୁସ୍ତକରେ ରମ୍ୟବାଦୀ ଯୁଗଧର୍ମୀର କାବ୍ୟ ଓ ବିଜ୍ଞାନର ଦ୍ୱନ୍ଦ୍ୱର ଏକ ବିବରଣୀ ଦେଖିବାକୁ ମିଳେ । ସେ ରମ୍ୟବାଦୀ ଆନ୍ଦୋଳନର ଏକ ବ୍ୟଙ୍ଗକାର ଥିଲେ । ସେଲି [ ୧୭୯୨-୧୮୨୨ ] ତାଙ୍କର "Defence of Poetry" [ ୧୮୪୦ରେ ପ୍ରକାଶିତ ] ପୁସ୍ତକରେ 'ଯୁକ୍ତି' ଓ 'କଳ୍ପନା' ମଧ୍ୟସ୍ଥ ପାର୍ଥକ୍ୟ ଦର୍ଶାଇବାକୁ ଚେଷ୍ଟା କରିଥିଲେ । ୧୮୮୨ ରେ ପ୍ରକାଶିତ ମାଥ୍ୟୁ ଆର୍ନୋଲ୍ଡ଼ [୧୮୨୨-୧୮୮୮ ] ଙ୍କ "Literature and Science" ପୁସ୍ତକରେ ଏହି ଦ୍ୱନ୍ଦ୍ୱର ଏକ ପ୍ରାଞ୍ଜଳ ବିବରଣୀ ମିଳେ [ Literary Criticism— Pages 416-418, 449 ] ।

ଉଠୁଛୁ, ତାହା ପରିବର୍ତ୍ତନ ଶୀଳ ପରିସ୍ଥିତିର ମୁକାବିଲା କରିପାରୁ ନାହିଁ । ସୁତରାଂ ଚ୍ଚରି ପାଖରେ ଏଇ ପରିବର୍ତ୍ତନ ପ୍ରକ୍ରିୟା ପ୍ରତି ଅଦମ୍ୟ କୌତୂହଳ, ତା' ସହ ଅଭିଯୋଜନା ସ୍ଥାପନ ପାଇଁ ଐକାନ୍ତିକ ଉଦ୍ୟମ, ଆଉ ଏକ ଅଜଣା ଭୟ, ତ୍ରାସ ଅବା ବିରୋଧାଭିଷା ଭୟ, ପରିବର୍ତ୍ତନ ପ୍ରତି ନୁହେଁ, କିନ୍ତୁ ତାର ପରିଣତି ପ୍ରତି । ହୁଏତ ଏଇ ବୃହତ୍ତର ଧାରାରୁ ମଣିଷ ବା ବ୍ୟକ୍ତି ବିଚ୍ଛିନ୍ନ ହୋଇ ଯାଉଛି । ହୁଏତ ଏଇ ଧାରାର ପରିଣତିକୁ ପୁରୁଣା ମଣିଷ ଉପଭୋଗ କରିପାରିବ ନାହିଁ । ହୁଏତ ଏଇ ପରିଣତି ପୁରୁଣା ମଣିଷକୁ ବାଦ୍ ଦେଇ ନୂତନ ମଣିଷ ଓ ତାରୁଣ୍ୟକୁ ଆଲିଙ୍ଗନ କରିବ । ହୁଏତ ପୁରୁଣା ମଣିଷ ପଛରେ ପଡ଼ିଯିବ । ପରିତ୍ୟକ୍ତ ହୋଇଯିବ ।

ସୁତରାଂ ନୂତନ ଧାରା ବା ପ୍ରବାହର ବିରୋଧ, ଏହାକୁ ସୀମିତ ଓ ସଙ୍କୁଚିତ କରିବାର ଚେଷ୍ଟା, ଅବା ଏଇ ପ୍ରବାହ ସହ କୃତ୍ରିମ ବା ପ୍ରାକୃତିକ ଅଭିଯୋଜନା ସ୍ଥାପନ, ଅବା ଏହା ସହ ଏକ ସାଳିସ, ଯଦ୍ଵାରା ଏହାର ପ୍ରବାହ ସହ ଆତ୍ମୀକରଣ ନ ହେଲେ ମଧ୍ୟ ପୁରୁଣା ମଣିଷ ଓ ଅନୁଷ୍ଠାନର ସ୍ଥିତି, ପ୍ରତିଷ୍ଠା, ଭୋଗ ଓ ଅଧିକାର ବଳବତ୍ତର ରହିବ ।

ଅଷ୍ଟାଦଶ ଶତାବ୍ଦୀରେ "ପରିବର୍ତ୍ତନ"ର ଏଇ ବ୍ୟାପକତା ବା ମହା-ଉଚ୍ଛଳ ଜଳଧିର ତାତ୍ପର୍ଯ୍ୟ ଠିକ୍ ଭାବେ ଅବଧାରଣା କରିବାକୁ ହେଲେ ଜୀବନର ବିଭିନ୍ନ ସ୍ତରରେ ଓ ବିଭାବରେ ଯେଉଁ ସବୁ ପରିବର୍ତ୍ତନ ଆସିଥିଲା, ସେ ସମ୍ବନ୍ଧରେ ମୋଟାମୋଟି ଭାବେ ଏକ ଧାରଣା କରିବାକୁ ହେବ । ପ୍ରଥମରେ ଆମେ ଦେଖିଲୁ ପ୍ରକୃତିକୁ ପରିବର୍ତ୍ତନ କରିବାର ବିଦ୍ୟାରୁ, ତାକୁ "ଶକ୍ତି"ରୁ ଅତିଥି ଆଉ ମିତ୍ର ଭାବେ ପରିବର୍ତ୍ତନ କରିବାର କୌଶଳରୁ ଗଢ଼ି ଉଠିଥିଲା ପ୍ରଯୁକ୍ତିବିଦ୍ୟାର ପ୍ରୟୋଗାତ୍ମକ କଳାତ୍ମକତା ଓ ଆସିଲା ଶିଳ୍ପ ବିପ୍ଳବ ।।୭୭।।

---

୭୭ । ଏ ସନ୍ଦର୍ଭରେ ନିମ୍ନଲିଖିତ କେତେକ ଆବିଷ୍କାର ଓ ଉଦ୍ଭାବନ ଉଲ୍ଲେଖଯୋଗ୍ୟ—

(କ) ୧୭୩୩—ଜନ୍ 'କେ'ଙ୍କ ଦ୍ଵାରା Fly Shuttle ଉଦ୍ଭାବନ

ଏହା ସାଙ୍ଗକୁ ଆସିଲା ଅଧିକ ଉତ୍ପାଦନ, ଅଳ୍ପ ଦରରେ ଜିନିଷ ଉତ୍ପାଦନ, ଦାସତ୍ୱ ଓ ଶିଶୁ ଶ୍ରମିକ ସମସ୍ୟା, ନୂତନ ଶିଳ୍ପ ସମ୍ପର୍କ, କାରଖାନା ଆଇନ, ମାଲିକ ଓ କର୍ମଚାରୀ ମଧ୍ୟରେ ନୂତନ ସମ୍ପର୍କ, ଗାଁର କାରିଗର ମାନଙ୍କ ସମସ୍ୟା, ପୂର୍ବକାଳର "ଦୁର୍ଭିକ୍ଷ" ପରିବର୍ତ୍ତେ ନୂତନ ସୃଷ୍ଟ "ସହର"ର ବେକାର ସମସ୍ୟା ଇତ୍ୟାଦି । ସେଇ କ୍ରମରେ ଆସିଲା କୁଟୀର ଶିଳ୍ପର ପତନ, ସହରର ସୃଷ୍ଟି, ଗାଁ ଛାଡ଼ି ସହରକୁ ଧାବିତ ହେବାର ସମସ୍ୟା, ଅଧିକ ଧନ ସମ୍ପଦ ଓ ଅଧିକ ଅର୍ଥ ଉପାର୍ଜନର ସମସ୍ୟା, ରାସ୍ତାଘାଟ, ପୋଲ ଇତ୍ୟାଦି ନିର୍ମାଣ ଜନିତ ପରିବର୍ତ୍ତନର ଆନୁଷଙ୍ଗିକ ସମସ୍ୟା, ପରସ୍ପର ସହ ସମ୍ପର୍କ ସ୍ଥାପନର ଓ ପରସ୍ପରର ଖବର ଦିଆନିଆ, ଆଦାନ ପ୍ରଦାନ କରିବାର

---

(ଖ) ୧୭୬୯—ଓ୍ୱାଟ୍ ଇଞ୍ଜିନ୍‌ରେ ବ୍ୟବହାର ହେବାପାଇଁ ଏକ ନୂତନ ପ୍ରକାରର କଣ୍ଡେନ୍‌ସର ଉଦ୍ଭାବନ କଲେ । ରିଚାର୍ଡ଼ ଆର୍କରାଇଟ୍ Roller Spinning Frameର ପ୍ରବର୍ତ୍ତନ କଲେ ।

(ଗ) ୧୭୭୦—ଜେମସ୍ ହାରଗ୍ରୀଭସ୍ SPinning Jennyର ପ୍ରବର୍ତ୍ତନ କଲେ ।

(ଘ) ୧୭୭୯—ସାମୁଏଲ୍ କ୍ରମ୍ପଟନ Mule ର ପ୍ରବର୍ତ୍ତନ କଲେ ।

(ଙ) ୧୭୮୫—ଏଡ଼୍‌ମଣ୍ଡ କାର୍ଟରାଇଟ୍ Power Loomର ପ୍ରବର୍ତ୍ତନ କଲେ ।

(ଚ) ଆବ୍ରାହମ ଡର୍ବି ଓ ହେନେରୀ କୋର୍ଟ୍ ଅଙ୍ଗାର ବଦଳରେ କୋଇଲାର ବ୍ୟବହାର ପ୍ରଣାଳୀ ଦର୍ଶାଇଲେ ।

(ଛ) ୧୮୨୫, ୧୮୨୯, ୧୮୩୦—ରେଳପଥ ଓ ରେଳବାଇର ଆରମ୍ଭ ।

(ଜ) ୧୮୩୮—Steam hammer ର ପ୍ରବର୍ତ୍ତନ ।

(ଝ) ୧୮୫୬-୧୮୬୬ ରେ ବେସେମର ଓ ସାଇମେନ୍‌ଙ୍କ ଦ୍ୱାରା ଲୁହାଶିଳ୍ପରେ ନୂତନ ଇଞ୍ଜିନିଅରିଂ କୌଶଳର ପ୍ରବର୍ତ୍ତନ ।

ନୂତନ ନୂତନ ପ୍ରଣାଳୀ ଓ ତତ୍‌ଜନିତ ସମସ୍ୟା, ଜାତି ଜାତି ଓ ଶ୍ରେଣୀ ଶ୍ରେଣୀ ମଧ୍ୟସ୍ଥ ଭେଦଭାବର କ୍ରମ ବିଲୋପ ଓ ନୂତନ ଶ୍ରେଣୀ ସୃଷ୍ଟି ହେବାର ସମସ୍ୟା, ଶିଳ୍ପାନ୍ତରରେ ଏଇ ସବୁ ସମସ୍ୟାଗୁଡ଼ିକର ଉପଲବ୍ଧି ଓ ଅବଧାରଣା ଜନିତ ନୂତନ ନୂତନ ତତ୍ତ୍ୱ ଓ ମନନ ସବୁ ।

ଶିଳ୍ପ ବିପ୍ଳବ ପୂର୍ବରୁ ଓ ପରେ ଆସିଥିଲା ବହୁ ବୈଜ୍ଞାନିକ ଆବିଷ୍କାର ଓ ଉଦ୍ଭାବନ । ମଣିଷର ଜ୍ଞାନର ତୃତୀୟ ନେତ୍ର ସହସା ଖୋଲିଗଲା ଯେପରି ! ପୂର୍ବ ସୂରି ମାନେ ଅନେକ କଥା ଜାଣିଥିଲେ । କିନ୍ତୁ ସେ ଜାଣିବା ପର୍ଯ୍ୟାପ୍ତ ନ ଥିଲା । ପୁଣି, ସେ ଜାଣିବାରେ ବହୁତ ଭୁଲ୍ ଆଉ ଅନେକ ଅନ୍ଧବିଶ୍ୱାସ କଥା ରହିଯାଇଥିଲା । ସେ ଜାଣିବା ଯେମିତି ଅତି କମ୍, ହେଯ଼ୁ ଆଉ ନଗଣ୍ୟ ॥୬୭॥ ସେହିପରି ମନୋବିଜ୍ଞାନ କ୍ଷେତ୍ରରେ ଆସିଥିଲା ଅଭୂତ-

---

୬୭ । ୧୭୦୪ରେ ନିଉଟନ୍‌ଙ୍କ "Optiks", ୧୭୪୩ରେ Leyden Jar, ୧୭୪୪ରେ ଲାଭୋଇଜରଙ୍କ Law of conservation of Mass, ୧୭୪୬ରେ Osmosis ପ୍ରକ୍ରିୟା, ୧୭୫୯ରେ ଉଇଲିଅମ ପୋର୍ଟର ଫିଲ୍‌ଡଙ୍କ "A treatise on the eye— the manner and phenomena of Vision", ୧୭୭୦ରେ ସ୍କିଲେଙ୍କ ଅମ୍ଳଜାନ ଆବିଷ୍କାର, ଲାଭୋଇଜରଙ୍କ "ଫସ୍‌ଫରସ୍"କୁ ଏକ ମୌଳିକ ବସ୍ତୁରୂପେ ପ୍ରତିପାଦନ, ରଅରଫୋଲ୍‌ଡଙ୍କ ଦ୍ୱାରା ଯବକ୍ଷାରଜାନ ପ୍ରସ୍ତୁତ, ପ୍ରିଷ୍ଟଲେଙ୍କ "The history and Present state of discoveries relating to vision, light and colour" ପ୍ରକାଶନ, ୧୭୭୪ରେ ପ୍ରିଷ୍ଟଲେଙ୍କ ଅମ୍ଳଜାନ ଆବିଷ୍କାର ଓ ଆମୋନିଆ ଗ୍ୟାସ୍ ପ୍ରସ୍ତୁତ, ୧୭୭୬ରେ କାଭେଣ୍ଡିସ୍‌ଙ୍କ ଦ୍ୱାରା "ଉଦଜାନ"କୁ ଏକ ମୌଳିକ ବସ୍ତୁରୂପେ ପ୍ରତିପାଦନ, ୧୭୮୦ରେ ବେଙ୍ଗର muscle ଉପରେ ଗାଲଭାନିଙ୍କ ପରୀକ୍ଷା, ୧୭୮୧ରେ କାଭେଣ୍ଡିସଙ୍କ ଦ୍ୱାରା 'ଜଳ' ଏକ ଯୌଗିକ ବସ୍ତୁ ବୋଲି ପ୍ରତିପାଦନ, ୧୭୮୭ରେ Charles law, ୧୭୯୧ରେ ଗାଲଭାନିଙ୍କ Watter cell Batteries, ପ୍ରାଉଷ୍ଟଙ୍କ Law

ପୂର୍ବ ଅଗ୍ରଗତ ଆଉ କ୍ରମ୍ବାଶୀଳତା ||୬୮|| ଆସିଥିଲା ବ ଦର୍ଶନ କ୍ଷେତ୍ରରେ ||୬୯|| ଆଉ ମାନବିକ ତତ୍ତ୍ୱ କ୍ଷେତ୍ରରେ |

---

of definite or constant proportions, ୧୭୯୧-୯୨ରେ ନ୍ୟୁଟନଙ୍କ Colour theory, ୧୭୯୦ରେ ରିଚରଙ୍କ Law of reciprocal or equivalent proportions, ୧୭୯୪ରେ ଏରାସ୍ମସ୍ ଡାରୱିନଙ୍କ "Zoonomia" ପୁସ୍ତକ, ୧୮୦୦ ମସିହାରେ ଭୋଲ୍ଟାଙ୍କ Voltaic Pile ଇତ୍ୟାଦି ଇତ୍ୟାଦି |

୬୮ | (a) Reflex action—Descarte, La—Mattrie, Cabanis, Rupert whytt etc.

(b) phrenology—Spurzheim, Gall etc.

(c) Nerve impulses—Galvani, Volta etc.

(d) Taxonomy and Physiology--Linnaeus, Haller, Bichat etc.

(e) Books by charles Bennet, Hartley, Lamattrie [ Hedonism ], Helvetius, Durgald steward, Reid, Thomas Brown etc.

୬୯ | (i) Berkeley—Principle of Human Understanding ( 1710 )

(ii) Hume—A treatise on Human nature (1739) Enquiry concerning human understanding (1748)

(iil) Condillac –Book on Sensation (1754)

ନୂତନ ଦିଗନ୍ତ ସବୁ କ୍ଷେତ୍ରକୁ ବ୍ୟାପି ଯାଇଥିଲା । ଏ ଦିଗନ୍ତ ସମ୍ପୂର୍ଣ୍ଣ ଅଭିନବ । ଏଇ ଦିଗନ୍ତର ପଶ୍ଚାତ୍ତର ନାହିଁ । ଏଇ ନୂତନ ଦିଗନ୍ତ ସହିତ ତୁଳନା କେବଳ ସେଇ ନୂତନ ଦିଗନ୍ତ ।

ଏଇ ନୂତନ ଦିଗନ୍ତ ସୃଷ୍ଟି କଲା ନୂତନ ପରମ୍ପରା । ନୂତନ ସଂସ୍କୃତି । ଆଉ ନୂତନ ଅବବୋଧ ।

## ପାଞ୍ଚ

ଅନ୍ତର୍ନିହିତ ଦୁର୍ବଳତା ବା ନାସ୍ତିକତାର ଭାବ, ଅନ୍ତର୍ନିହିତ ସାମର୍ଥ୍ୟ, ସମ୍ବେଦନା ପ୍ରତି ଏକ ସଚେତନତା ଆଉ ଅବବୋଧ, ଇଆ ମୂଳରେ ରହିଛି ସେଓଟି କଥା । ପ୍ରଥମଟି-ପରିସ୍ଥିତି ଓ ପ୍ରକୃତି ଉପରେ ମଣିଷର କର୍ତ୍ତୃତ୍ୱ ବୃଦ୍ଧି ପାଉଛି । ପରିସ୍ଥିତି ବଦଳି ଯାଉଛି । ମଣିଷ ପ୍ରକୃତିକୁ ଓ ପରିସ୍ଥିତିକୁ ବଦଳେଇ ଦେଉଛି । ଏଇ ବଦଳିଯିବାର ପ୍ରକ୍ରିୟା ମଧ୍ୟରେ ସେ ନିଜେ ବଦଳି ଯାଉଛି । ବଦଳି ଯାଉଛି ତାର ସଂସ୍କୃତି । ଦ୍ୱିତୀୟଟି ହେଉଛି—ବଦଳିଲା ପରିସ୍ଥିତି ପ୍ରତି ମଣିଷର ବ୍ୟବହାର, ବଦଳିଲା ମଣିଷର ନୂତନ ପରିସ୍ଥିତି ପ୍ରତି ବ୍ୟବହାର ଓ ତା ସାଙ୍ଗକୁ ବଦଳିଲା ମଣିଷର ପରସ୍ପର ପ୍ରତି ବ୍ୟବହାର ।

ଏଉଠୁ ଆସିଲା ଏକ ନୂତନ ବିଶ୍ୱାସ । ପୁରାତନ ପ୍ରାଗ୍‌ଐତିହାସିକ ପୌରାଣିକ ବିଶ୍ୱାସ । କ୍ଷମତା ଉପରେ ବିଶ୍ୱାସ । ଦଇବ ବା ନିୟତି ଉପରେ ବିଶ୍ୱାସ ନୁହେଁ । ମାଂସପେଶୀ ଉପରେ ବିଶ୍ୱାସ ନୁହେଁ । ଅବା ଧନୁଶର, ଚତୁରଙ୍ଗ ବଳ ବା ସୁଦର୍ଶନ ଚକ୍ର ଉପରେ ବିଶ୍ୱାସ ନୁହେଁ । ମଣିଷର ନିଜ ଉପରେ ବିଶ୍ୱାସ । ଆଗରୁ ଚାଲିଥିଲା ମଣିଷ-ପ୍ରକୃତି ମଧ୍ୟରେ ଭୀଷ୍ମ-ପରଶୁରାମ ଯୁଦ୍ଧ । ପରଶୁରାମଙ୍କ ଆକ୍ରମଣ ଓ ଭୀଷ୍ମଙ୍କ ଆତ୍ମରକ୍ଷା, ପ୍ରତି ଆକ୍ରମଣ ନୁହେଁ । ମଣିଷ ଏ ପର୍ଯ୍ୟନ୍ତ କେବଳ ଆତ୍ମରକ୍ଷା କରି ଆସୁଥିଲା । ସେ ପର୍ଯ୍ୟାୟର, ଆତ୍ମରକ୍ଷାର ପର୍ଯ୍ୟାୟ ଶେଷ ହୋଇଗଲା । ପ୍ରକୃତି ଆଉ ଅଲୌକିକ, ଦୈବ ବା ଦେବତା ହୋଇ ରହିଲା ନାହିଁ । ହୋଇଗଲା କଞ୍ଚାମାଲ । ମଣିଷ

ହାତକୁ ଆସିଗଲା ପାଶୁପତ ଅସ୍ତ୍ର ସାଙ୍ଗକୁ ଅକ୍ଷୟ ତୂଣୀର । ପ୍ରକୃତ ହୋଇଗଲା ଆଲ୍ଲାଉଦ୍ଦିନର ବତୀ ଆଉ ବିକ୍ରମାଦିତ୍ୟଙ୍କ ବେତାଳ । ପ୍ରକୃତ ଉପରେ କ୍ଷମତା ବିସ୍ତାର ସାଙ୍ଗକୁ ଆସିଲା ମଣିଷ ଉପରେ କ୍ଷମତା ବିସ୍ତାର । ସୁତରାଂ ରାଜା ବା କ୍ଷମତା କେନ୍ଦ୍ରରେ ଥିବା ମଣିଷ ପ୍ରତି ଅନ୍ୟ ମଣିଷ ହୋଇଗଲେ କଣ୍ଢାମାଲ । ଏଇ ପରିପ୍ରେକ୍ଷୀରେ ଶାଶ୍ୱତ ସନାତନ ନିଷ୍ୟମ ବୋଲି କିଛି ରହିଲା ନାହିଁ । ସବୁ ହୋଇଗଲା ଅବିନଶ୍ୱର । ଆଗରୁ ଧର୍ମ ଓ ଈଶ୍ୱର ସମ୍ବନ୍ଧୀୟ ଧାରଣା ମଣିଷର କ୍ଷମତାର ପରିସୀମା ଟାଣି ଦେଇଥିଲା । ଏଣିକି ଈଶ୍ୱର ନେପଥ୍ୟେ ରହିଲେ । ଧର୍ମ ରହିଲା ପରଦା ଆଢୁଆଳରେ । ପ୍ରକୃତ ଆସିଗଲା ମଞ୍ଚ ଉପରକୁ । ପ୍ରକୃତ ବିଷୟକ ଧାରଣା ମଣିଷର କ୍ଷମତାର ପରିସୀମା ଟାଣି ଦେଲା । ଆଗରୁ ଭାରସାମ୍ୟ ଥିଲା—ସମାଜରେ "ଏକ" ଓ "ବହୁ" ଭିତରେ, 'ବ୍ୟକ୍ତି' ଓ 'ଗୋଷ୍ଠୀ' ଭିତରେ । ବର୍ତ୍ତମାନ ସେ ଭାରସାମ୍ୟ ଭାଙ୍ଗିଗଲା । ଅକୈକ୍ୟ ପ୍ରକୃତ ଉପରେ ମଣିଷର କ୍ଷମତାର ପରିସୀମା ଓ ମଣିଷର ଅନ୍ୟ ମଣିଷ ଉପରେ କ୍ଷମତା ବିସ୍ତାରର ଔଚିତ୍ୟ ଏହି ଦୁଇ ପରିସୀମା ମଧ୍ୟରେ ମଣିଷର ନୈତିକ, ବୌଦ୍ଧିକ ଓ ସାମାଜିକ ସମ୍ପର୍କ ସୀମିତ ହୋଇଗଲା । ପୁରାତନ ଜଗତ୍ ଚାଲିଯାଇ ଆସିଲା ନୂତନ ଜଗଦ୍ବଳୟ ॥୭୦॥

ଉପରେ ବର୍ଣ୍ଣିତ ପ୍ରବଣତା ଆଉ ଅବବୋଧ ଏଇ ଦୁଇ ଜଗତ୍ ପ୍ରତି ଏକ ସଚେତନତା ଓ ଏଇ ଦୁଇ ଜଗତ୍‌ର ପାରସ୍ପରିକ ସମ୍ପର୍କ ପ୍ରତି ଏକ ସଚେତନତା ଆଉ ପ୍ରତିକ୍ରିୟା । ପରିବର୍ତ୍ତନ ପ୍ରକ୍ରିୟା ପ୍ରତି ସଚେତନତା, ପ୍ରକ୍ରିୟାର ଦୁଇ ଜଗତ୍ ବ୍ୟାପି ପରିଣତି ପ୍ରତି ଏକ ସଚେତନତା ଆଉ ପ୍ରତିକ୍ରିୟା । ଯେଉଁଠି ଜଗତ୍‌ର ପରିବର୍ତ୍ତନ ହୋଇଛି ସେଇଠି ସେଇ ନୂତନ ଜଗତ୍ ପ୍ରତି ସଚେତନତା ଆସିଛି ନୂତନ ଅବବୋଧ ଆକାରରେ । ଅଗ୍ନିର ଆବିଷ୍କାରରୁ ଆମେ ସେଇଆ ଦେଖିଲୁ । ଏ ଆବିଷ୍କାର ପ୍ରତି ସଚେତନତା

୭୦ । Betrand Russel History of western Philosophy (1961) page-699-700

ବର୍ଟ୍ରାଣ୍ଡ୍ରସେଲ୍ ଏହି ଭାବକୁ ବିଶଦଭାବେ ବ୍ୟାଖ୍ୟା କରିଛନ୍ତି ।

ଏକ ନୂତନ ଦିଗନ୍ତ, ନୂତନ ଦ୍ୟୋତନା, ଆଉ ନୂତନ ଅବବୋଧ ଆକାରରେ ଆସିଥିଲା । ସେହିପରି ଆସିଥିଲା ନୂତନ ଅବବୋଧ "ଲେଖା"ର ପ୍ରବର୍ତ୍ତନ ଆଉ "ଛାପାଖାନା"ର ଉଦ୍ଭାବନ ପରେ ।

୧୪୪୦ ମସିହାରେ ଛାପାଖାନାର ଉଦ୍ଭାବନ ହେଲା । ଆଗରୁ ଜ୍ଞାନ ଥିଲା ପାରମ୍ପରିକ । ଗୁରୁକୁଳ ଆଶ୍ରମ ଭିତ୍ତିକ । ଲେଖାର ଆବିଷ୍କାର ପରେ ଆସିଲା "ପୋଥି" । ମହାଭାରତ ଯୁଦ୍ଧପରେ ଉକ୍ତ ଆଖ୍ୟାନର ଲିପିକରଣ ପାଇଁ ପ୍ରାୟ ଛଅଶହ ବର୍ଷ ଲାଗିଗଲା । ସେତେବେଳେ "ସ୍ମୃତି" ଥିଲା ବିଦ୍ୟା । "ଶ୍ରୁତି"ଥିଲା ସମ୍ପୃତି । "ବ୍ୟାସଦେବ" "ସ୍ମୃତି"ର ଦେବତା । କିନ୍ତୁ ତାଙ୍କ ପରେ ପରେ ସ୍ମୃତିର ଗୁରୁତ୍ୱ ଭାଙ୍ଗିଗଲା । କାରଣ ସେ ଥିଲେ ପୁରାତନ ଅବବୋଧର ଶେଷ ଓ ଶ୍ରେଷ୍ଠ ପ୍ରତୀକ ଏବଂ ନୂତନ ଅବବୋଧର ସ୍ମାରକ । ଛାପାଖାନାର ଉଦ୍ଭାବନ ପରେ "ପୋଥି" "ବହି"ରେ ପରିଣତ ହୋଇଗଲା । ପୂଜା "ପଢ଼ା"ରେ ପରିଣତ ହୋଇଗଲା । ବହିକୁ ଏକାଧିକ-ବାର ପଢ଼ି ହୁଏ । ସୁତରାଂ କାବ୍ୟର ଶ୍ରାବ୍ୟତାର ଗୁରୁତ୍ୱ କମିଗଲା । ଛନ୍ଦର ଗୁରୁତ୍ୱ କମିଗଲା । ସେହିପରି ଧ୍ୱନି ଆଉ ଅଳଙ୍କାର ବି । ଛନ୍ଦରୁ ଛନ୍ଦପତନ, ଛନ୍ଦ ପତନରୁ ଛନ୍ଦମୁକ୍ତତା । ଛନ୍ଦର ଗୁରୁତ୍ୱ କମିଯିବା ସାଙ୍ଗକୁ ଶବ୍ଦର "ଅର୍ଥ"ର ଗୁରୁତ୍ୱ ବଢ଼ିଗଲା । ସେହିପରି ପଦାର୍ଥବିତ୍ ମାନଙ୍କ ଦ୍ୱାରା Colour vision ବିଷୟକ ତତ୍ତ୍ୱର ପ୍ରବର୍ତ୍ତନ ଓ ଫଟୋଗ୍ରାଫିର ପ୍ରବର୍ତ୍ତନ ପରେ ପ୍ରକୃତି ବା ଦୃଶ୍ୟପଟ ସହ ସାମଞ୍ଜସ୍ୟ ଉପରେ ଚିତ୍ରକାରର ଗୁରୁତ୍ୱ କମିଗଲା । ଆସିଲା ନୂତନ ପରୀକ୍ଷା; ଅଙ୍କନର, କ୍ଷେତ୍ରର, ଆଙ୍ଗିକର ଓ ଭାବର ।।୭୧।।

---

୭୧ । ଆଗରୁ କଳାର ଆଭିମୁଖ୍ୟ ଥିଲା ପ୍ରକୃତିର ଅନୁକରଣ । ତେଣୁ ଅଷ୍ଟାଦଶ ଶତାବ୍ଦୀରେ ସାହିତ୍ୟକୁ ସଙ୍ଗୀତ ଓ ଚିତ୍ରକଳାର ଏକପ୍ରକାରର Contentual norm ରୂପରେ ଏବଂ ସଙ୍ଗୀତ ଓ ଚିତ୍ରକଳାକୁ ସାହିତ୍ୟର ଏକ ପ୍ରକାରର Technical norm ରୂପରେ ବିଚାର କରାଯାଉଥିଲା ।

ସାହିତ୍ୟରେ ଅନୁକରଣପାଇଁ 'ବସ୍ତୁ' ଥିଲା କିନ୍ତୁ 'ରଙ୍ଗ' ନ ଥିଲା । ଚିତ୍ରକଳାର ବସ୍ତୁଥିଲା, ରଙ୍ଗ ବି ଥିଲା । କିନ୍ତୁ ସଙ୍ଗୀତର ରଙ୍ଗ ଥିଲା ଅଥଚ ବସ୍ତୁ ନଥିଲା ।

କବିତା "କାଳ"କୁ ନେଇ । ଚିତ୍ରକଳା 'ପୃଥ୍ୱୀ'କୁ ନେଇ । ଲେସିଙ୍ଗ [ ୧୭୨୯-୧୭୮୧ ] କବିତା ଓ ଚିତ୍ରକଳାର ପୃଥକୀକରଣ କରିଥିଲେ [ ଅର୍ଥାତ କାଳ ଓ ପୃଥ୍ୱୀର ପୃଥକୀକରଣ ] । ତାଙ୍କର ସମସାମୟିକ ଜେ. ଜି. ହରଡ଼ର [ ୧୭୪୪-୧୮୦୩ ] ଚିତ୍ରକଳା [ ଚକ୍ଷୁର କଳା ], ସଙ୍ଗୀତ [ କର୍ଣ୍ଣର କଳା ] ଓ ସ୍ଥାପତ୍ୟ [ ସ୍ପର୍ଶର କଳା ] ର ପୃଥକୀକରଣ କରିଥିଲେ । କାଣ୍ଟ୍ ତାଙ୍କର The Critique of Judgement' ରେ ଶବ୍ଦ, ଭଙ୍ଗୀ ଓ ସ୍ୱର ଭେଦରେ ସ୍ଥାପତ୍ୟ, ଚିତ୍ରକଳା ମଧ୍ୟସ୍ଥ ପାର୍ଥକ୍ୟ ନିର୍ଣ୍ଣୟ କରିଥିଲେ ।

[ Literary Criticism Pages 275-277 ]

ଏହି କ୍ରମରେ ଆମେ ଦେଖିବୁ ପ୍ରକୃତ ବା ଦୃଶ୍ୟପଟ ସହ ସାମଞ୍ଜସ୍ୟ ପରିବର୍ତ୍ତି ଚିତ୍ରକଳାରେ ସମ୍ବେଦନା ଫୁଟାଇବାର ପ୍ରଚେଷ୍ଟାର ଆରମ୍ଭ । ଏଠି ବିଜ୍ଞାନ ଓ ଯନ୍ତ୍ର ସହ ଚିତ୍ରକଳାର ଏକ ଅଭିଯୋଜନା ଓ ସମନ୍ୱୟ ସ୍ଥାପନ କରିବାର ପ୍ରଚେଷ୍ଟାର ସନ୍ଧାନ ମିଳିବ । ସେପରି Impressionist Art ।। ତା ପରେ ପରେ ଆସିଲେ Post-Impressionists, Vorticists, Futurists, Cubists ଇତ୍ୟାଦି ଇତ୍ୟାଦି । ଏମାନଙ୍କ ଭିତରେ ବିଜ୍ଞାନ ଓ ଯନ୍ତ୍ର ବିଚ୍ଛିନ୍ନ ଏକ କଳାତ୍ମକତାର ଅନୁସନ୍ଧାନ ମିଳେ ବୋଲି କୁହାଯାଇଛି । ଏମାନେ ପରମ୍ପରା ଓ କାମେରା-ଉଭସ୍ତୁକୁ ବର୍ଜନ କରିଛନ୍ତି ।

[ Encyclopaedia of the social sciences, Vols 9-10, Editor in Chief Edwin R.A. Seligman, Macmillan Co. N. Y. Article on "Modernism" by Horace M. Kallen-Page 567.

ଏଠାରେ ମନେ ରଖିବାକୁ ହେବ ଯେ, "ଦର୍ଶନ"ର ପରିବର୍ତ୍ତନ ହେଉଛି ପ୍ରକୃତ ବିଶ୍ୱବିଜ୍ଞାନ କରିବାର ଓ ପ୍ରକୃତ ଉପରେ କ୍ଷମତା ବିସ୍ତାରର ଫଳ ସ୍ୱରୂପ । ପ୍ରକୃତ ବିଜ୍ଞାନ ଆସୁଛି ପର୍ଯ୍ୟବେକ୍ଷଣର ବ୍ୟାପ୍ତି, ମୀମାଂସା ଗୁଡ଼ିକର ବ୍ୟାପକତା ଓ ପ୍ରାମାଣିକତା, ନୂତନ ଧାରା ଆଉ ଶୃଙ୍ଖଳାର ସନ୍ଧାନ ଭିତରୁ, 'ଦର୍ଶନ' ପୁଣି ପରିବର୍ତ୍ତନ ହେଉଛି ପ୍ରକୃତ ବିଜ୍ଞାନ ଜନିତ ଧାରାର ପରିଣତ ସ୍ୱରୂପ । ମଣିଷ-ମଣିଷ ଭିତରେ ନୂତନ ସମ୍ପର୍କ ଗଢ଼ି ଉଠୁଥିବା ଦୃଷ୍ଟିରୁ, ନୂତନ ଅନୁଷ୍ଠାନ ଗଢ଼ି ଉଠୁଥିବା ଦୃଷ୍ଟିରୁ ଓ ତାର କ୍ରିୟା ପ୍ରତିକ୍ରିୟା ଭିତରୁ । ସୁତରାଂ ପର୍ଯ୍ୟବେକ୍ଷଣର ବ୍ୟାପକତା ଓ ତତ୍‌ଜନିତ ମୀମାଂସା ଗୁଡ଼ିକ ମଧ୍ୟରୁ ସବୁ ନୂତନ ଦର୍ଶନ, ସବୁ ନୂତନ ଦ୍ୟୋତନା ଆଉ ଅବବୋଧର ଜନ୍ମ କାହାଣୀ ଠାବ କରିହେବ ॥୭୬॥ ଏହି ସୃଷ୍ଟିର ମୂଳରେ ରହିଛି ଏକ ଦୂରବୀକ୍ଷଣ—ପର୍ଯ୍ୟବେକ୍ଷଣର; ଆଉ ଅଛି ଏକ ଅଣୁବୀକ୍ଷଣ —ମୀମାଂସାର, ନୂତନ ସମ୍ପର୍କର । ପୁଣି ଏଇ

---

॥୭୬॥ ଏହି ପ୍ରଣାଳୀରେ ବାସ୍ତବବାଦ [ Realism ], ପ୍ରାକୃତବାଦ [ Naturalism ], ଅଭିବ୍ୟକ୍ତିବାଦ [ Expressionism ], Dadaism, ଅସ୍ତିତ୍ୱବାଦ [ Existentialism ] ପ୍ରଭୃତି ମତବାଦ ବା ପ୍ରତିକ୍ରିୟା ଗୁଡ଼ିକର ଉଦ୍ଭବ ପ୍ରକ୍ରିୟା ଅନୁଧାନରେ ପ୍ରଚେଷ୍ଟା କରାଯାଇପାରେ । ଏହି ସବୁ ତତ୍ତ୍ୱଗୁଡ଼ିକର ଦାର୍ଶନିକ ଭିତ୍ତିକୁ ଓ ତା ଉପରେ ହୋଇଥିବା ବହୁ ବିତର୍କର ଆଲୋଚନାକୁ ବାଦଦେଲେ ପର୍ଯ୍ୟବେକ୍ଷଣ ବା ଅନୁଭୂତିର ବିଭିନ୍ନତା ଓ ବୈଚିତ୍ର୍ୟକୁ ଏକକ ଭାବରେ ଧରି ଏ ଗୁଡ଼ିକର ଉନ୍ମେଷ ଓ ଉତ୍ତରଣ ଅନୁସନ୍ଧାନ କରିବା ସମ୍ଭବ ହେବ । ବୈଜ୍ଞାନିକ ପଦ୍ଧତିରେ ସାମାଜିକ ଜୀବନର ସବୁ ବିଷୟର ପର୍ଯ୍ୟବେକ୍ଷଣ, ଶ୍ରେଣୀ ବିଭାଗ, ଓ ଅନୁଶୀଳନ, ଓ ଘଟଣାବଳୀର ବର୍ଣ୍ଣନା ଓ ବିବରଣୀ ଦେବାର ମୋହରୁ ଆସିଥିଲା "ବାସ୍ତବତା" । କିନ୍ତୁ ଏହା କଳା, ଇତିହାସ ଓ ସମାଜତତ୍ତ୍ୱ ମଧ୍ୟସ୍ଥ ଭିନ୍ନତା ବାରିପାରିଲା ନାହିଁ ବୋଲି,

ଦୂରବୀକ୍ଷଣ ଆଉ ଅଣୁବୀକ୍ଷଣ ପ୍ରଭୃତି ଦୁଇ ଯନ୍ତ୍ରର ବର୍ଣ୍ଣାଳୀର ଲକ୍ଷଣ ଆଉ ଅନ୍ୱେଷଣ ମଧ୍ୟରୁ ଆସୁଛି ନୂତନ ଦ୍ୟୋତନା ଆଉ ଅବବୋଧ ।

ପର୍ଯ୍ୟାପ୍ତଭୁକ୍ତ ପର୍ଯ୍ୟବେକ୍ଷଣର ଅନ୍ୱେଷଣ ଆଉ ତାର ମୀମାଂସାର ଲକ୍ଷଣରୁ ଆସୁଛି ନୂତନ ଦ୍ୟୋତନା ଆଉ ଅବବୋଧ । ପର୍ଯ୍ୟବେକ୍ଷଣ ହୁଏତ ଆଇପାରେ କିନ୍ତୁ ତାହା ପର୍ଯ୍ୟାପ୍ତଭୁକ୍ତ ହୋଇ ନ ଆଇପାରେ । ସତ୍ୟ ହୁଏତ ଉଦ୍‌ଭାସିତ ହୋଇଛି । କିନ୍ତୁ ତାହା ସଙ୍ଗଠ ରୂପରେ ଆସି ନାହିଁ । ପ୍ରକଟ ସତ୍ୟ ହୁଏତ ଆସିଛି ଏବଂ ଯୁକ୍ତି ତାକୁ ଘଣ୍ଟ ଘୋଡ଼େଇ ରଖିଛି । କିନ୍ତୁ ତାହା ପର୍ଯ୍ୟବେକ୍ଷଣଦ୍ୱାରା ସମର୍ଥିତ ହୋଇନାହିଁ । ସେ ସ୍ଥଳରେ ଦ୍ୟୋତନା ଆସିବ ନାହିଁ । ଅବବୋଧ ଆସିବ ନାହିଁ । ସେହିପରି ହୁଏତ ପର୍ଯ୍ୟବେକ୍ଷଣ ଆସିପାରେ ବା ପର୍ଯ୍ୟାପ୍ତଭୁକ୍ତ ହୋଇପାରେ । କିନ୍ତୁ ମୀମାଂସା ନ ଆସିପାରେ ସେପରି ସ୍ଥଳରେ ମଧ୍ୟ ଦ୍ୟୋତନା ଆସିବ ନାହିଁ । ଅବବୋଧ ଆସିବ ନାହିଁ ।

ଏ ସନ୍ଦର୍ଭରେ କେତୋଟି ଉଦାହରଣ ପର୍ଯ୍ୟାଲୋଚନା କରାଯାଇପାରେ ।

ଐତରେୟ ବ୍ରାହ୍ମଣରେ କପରନିକସ୍‌ଙ୍କ ସୂର୍ଯ୍ୟ ଚାରିପାଖରେ ପୃଥିବୀ ପ୍ରଦକ୍ଷିଣ କରୁଥିବା ଭାବଧାରା ପରିଲକ୍ଷିତ ହୁଏ ବୋଲି କୁହାଯାଇଛି । ଐତରେୟ ବ୍ରାହ୍ମଣର କାଳ ଖ୍ରୀ:ପୂ ୮୦୦-୬୦୦ । ଏହା କପରନିକସ [ ୧୪୭୩-୧୫୪୩ ]ଙ୍କ ଅନ୍ୟୁନ ଦୁଇହଜାର ବର୍ଷ ପୂର୍ବର କଥା । ଏଥିରେ କୁହାଯାଇଛି--ସୂର୍ଯ୍ୟ ଅସ୍ତ ହୁଏ ନାହିଁ ବା ଉଦୟ ହୁଏ ନାହିଁ । ଯେତେବେଳେ ସୂର୍ଯ୍ୟ ଅସ୍ତ ହେଉଛି ବୋଲି ମଣିଷ ଭାବେ, ସେତେବେଳେ 'ଦିନ'ର ଶେଷରେ ପହଞ୍ଚି ସୂର୍ଯ୍ୟ କେବଳ ପରିବର୍ତ୍ତିତ ହୋଇଯାଏ ଏବଂ ତଳେ ବା ଅପରାର୍ଦ୍ଧରେ "ରାତି" କରାଏ ଏବଂ ଉପରେ ବା ଅନ୍ୟ ଅର୍ଦ୍ଧରେ "ଦିନ" କରାଏ । ପୁଣି ଯେତେବେଳେ ସୂର୍ଯ୍ୟ ସକାଳେ ଉଦୟ ହେଉଛି ବୋଲି ମଣିଷ ଭାବେ । ସେତେବେଳେ ସେ "ରାତି"ର ଶେଷରେ ପହଞ୍ଚି କେବଳ ପରିବର୍ତ୍ତିତ ହୋଇଯାଏ ଏବଂ ତଳେ 'ଦିନ' କରାଏ

ଓ ଅନ୍ୟପାଖରେ "ଗଢ଼" କରାଏ । ପ୍ରକୃତରେ ସୂର୍ଯ୍ୟ ମୋଟେ ଅସ୍ତହୁଏ-ନାହିଁ ॥୭୩॥ ସେହିପରି ଭାସ୍କରାଚାର୍ଯ୍ୟଙ୍କ କୃତ ଗୋଲାଧ୍ୟାୟ ଗ୍ରନ୍ଥ [ ୧୧୧୪ ଖ୍ରୀ. ଅ.]ରେ ଗୋଲାକାର ପୃଥିବୀ, କପରନିକସ୍‌ଙ୍କ ତତ୍ତ୍ୱ ଓ ନିଉଟନଙ୍କ ମାଧ୍ୟାକର୍ଷଣ ତତ୍ତ୍ୱ ସହ ସାମଞ୍ଜସ୍ୟ ଥାଇ ଭାବଧାରା ଦେଖିବାକୁ ମିଳେ ।

(କ) ଆକୃଷ୍ଟ ଶକ୍ତିଶ୍ଚ ମହୀତୟା ଯତ୍
ଖସ୍ଥଂ ଗୁରୁ ସ୍ୱାଭିମୁଖଂ ସ୍ୱଶକ୍ତ୍ୟା ।
ଆକୃଷ୍ୟତେ ତତ୍ ପତତୀବ ଭାତି
ସମେ ସମନ୍ତାତ୍ କ୍ୱ ପତତ୍ୱିୟଂ ଖେ ॥

---

ପରେ ଜୀବନବିଜ୍ଞାନରେ ଡାରଉଇନଙ୍କ ପ୍ରଣାଳୀ[Taxonumic Biology] ଦାର୍ଶନିକ ବସ୍ତୁବାଦ [Materialism]ଓ Jaineଙ୍କ ମତବାଦ [Determinism] ଅବଲମ୍ବନ କରି ଆସିଲା ପ୍ରାକୃତବାଦ-ପୂର୍ଣ୍ଣ ବସ୍ତୁନିଷ୍ଠତା, ଜୈବିକ କ୍ରିୟା ଗୁଡ଼ିକର ବର୍ଣ୍ଣନାରେ ଏକ ଅବାଧ ସ୍ପଷ୍ଟବାଦିତା ଇତ୍ୟାଦି [ ବିଶ୍ୱଭାରତୀ ଦୀପିକା-1-1980 ପୃ. ୬୫-୬୭ରେ ଡଃ ଖଗେଶ୍ୱର ମହାପାତ୍ରଙ୍କ ଲିଖିତ "ବାସ୍ତବବାଦ-ସଜ୍ଞା ଓ ସୀମା" ନିବନ୍ଧରେ ଏହାର କେତେକ ଦିଗ ବିଷୟରେ ସୂଚନା ଦିଆଯାଇଛି । ] ସେହିପରି ସହର ବାହାରୁ ନ ଦେଖି ସହରର ଉପକଣ୍ଠରୁ ଜୀବନର ବିଭିବ ପର୍ଯ୍ୟବେକ୍ଷଣ କରିବାରୁ ଆସିଥିଲା "ଅଭିବ୍ୟକ୍ତିବାଦ" [୪୭ ପୃ. ୬୫-୬୭] । ବିଶ୍ୱଯୁଦ୍ଧରେ ଅଭିଜ୍ଞତାର ଚକିତତା ଓ ଲୋମହର୍ଷଣକାରୀତାରୁ ଆସିଥିଲା Dadaism ଓ ତାର ପରବର୍ତ୍ତୀ ପରିପ୍ରକାଶରୂପେ Surrlieasm ଇତ୍ୟାଦି । [ ୪୭ ପୃ ୪୭-୪୮ ଓ ୧୮୭-୧୮୮ ଓ Cassel's Encyclopaedia of Litertaure, Edited by S.H. steinberg-vol- I, pages 472-473, 377-378 ] ॥୭୩॥ Quoted by Radhakrishan in Indian philosophy vol-I page 29 from Haig's Edition, iii-44 ; Chhandogya Upanisad iii-II, 1-3

(ଖ) ଚଳା ପୃଥ୍ୱୀ ସ୍ଥିରାଗତ ଭୂଗୋଳେବ୍ୟୋମ୍ନି ତଷ୍ଠତ ।

(ଗ) କପିତ୍ଥ ଫଳବତ୍ ବର୍ଣ୍ଣଂ ଦକ୍ଷିଣୋତ୍ତରୟୋଃ ସମମ୍ ।।୭୪।।

କିନ୍ତୁ ଏହି ବିଷୟକଲ ନୂତନ ଅବବୋଧ ଆଣି ପାରିଲା ନାହିଁ କାହିଁକି ?

ଏହାର କାରଣ ହେଲ ସତ୍ୟ ଦର୍ଶନ ହୁଏତ ଥିଲ । କିନ୍ତୁ ତାହା ପର୍ଯ୍ୟବେକ୍ଷଣ ଭିତ୍ତିକ ନ ଥିଲ । ପର୍ଯ୍ୟବେକ୍ଷଣ ହୁଏତ ଥିଲା କିନ୍ତୁ ତାହା ପର୍ଯ୍ୟାୟଭୁକ୍ତ ନ ଥିଲା ବା ତାର ଶ୍ରେଣୀ ବିଭାଗ ନ ଥିଲା ।।୭୫।। ଶ୍ରେଣୀ ବିଭାଗ ହୁଏତ ଥିଲା, କିନ୍ତୁ ତାର ମୀମାଂସା ଠିକ୍ଭାବରେ ହୋଇ ନ ଥିଲା।।୭୬।।

---

୭୪ । ଜ୍ଞାନୀଗୁରୁ-ନିଗମାନନ୍ଦ, ଅନୁବାଦ ଦୁର୍ଗା ଚରଣ ମହାନ୍ତି ପୃ ୫ ।।

୭୫ । କଣାଦଙ୍କ ବୈଶେଷିକ ଦର୍ଶନ [ଖ୍ରୀ: ପୂ: ୫ମ-୬ଷ୍ଠ ଶତାବ୍ଦୀ]ର ସୂତ୍ର [ବାୟୁ ପୁରାଣ, ମହାଭାରତ, ପଦ୍ମପୁରାଣ, ଦେବୀ ଭାଗବତ ଇତ୍ୟାଦରେ ମଧ୍ୟ ସୂଚିତ] ଅନୁସାରେ ପଦାର୍ଥର କ୍ଷୁଦ୍ରତମ କଣିକା ହେଲ "ପରମାଣୁ"— ଯାହା ଶାଶ୍ୱତ ଓ ଅବିଭାଜ୍ୟ । କିନ୍ତୁ ଏହା ଚାରୋଟି ମୌଳିକ ଦ୍ରବ୍ୟର ତତ୍ତ୍ୱ [ କ୍ଷିତି, ଅପ୍, ତେଜ, ମରୁତ ] ଉପରେ ପର୍ଯ୍ୟବସିତ ଥିଲ । ସେହିପରି ଜୈନ ଦର୍ଶନର ବସ୍ତୁ ବା ପୁଦ୍ଗଳ [ ପରମାଣୁର ସମଷ୍ଟି ] ତତ୍ତ୍ୱ ।

୭୬ । ପ୍ରାଚୀନ ଭାରତୀୟ ବିଜ୍ଞାନ ରକ୍ଷଣଶୀଳ । କିନ୍ତୁ ଏହା ମଧ୍ୟରେ ବହୁ ପର୍ଯ୍ୟାୟ-ସରଣୀ [ Classification ] ମଧ୍ୟ ଦେଖିବାକୁ ମିଳେ । ଭେଷଜ ବିଜ୍ଞାନ [ ଚରକ ଶୁଶ୍ରୁତ ] ଓ ଏପରିକି ପାଣିନିଙ୍କ ବ୍ୟାକରଣରେ ମଧ୍ୟ ଏହା ଦୃଷ୍ଟିଗୋଚର ହୁଏ । ଏ ସବୁ ବହୁ ଅଭିଜ୍ଞତାରୁ ଏକ ପ୍ରକାରର ପ୍ରତ୍ୟକ୍ଷଦୃଷ୍ଟି [Intuition]ଦ୍ୱାରା ଉପଲବ୍ଧ ; ଯୁକ୍ତିର ଅବରୋହ ଉପପାଦନ ପ୍ରଣାଳୀଦ୍ୱାରା ଉପଲବ୍ଧ ନୁହେଁ ।

[୭୬-Chap xii-Article by H. J. J. Winter page 160]

ପାଶ୍ଚାତ୍ୟ ଜଗତରେ କବି ଗେଟେ [୧୭୪୯-୧୮୩୨]ଙ୍କ ଦୃଷ୍ଟାନ୍ତର ଏ ପର୍ଯ୍ୟାୟରେ ଉଲ୍ଲେଖ କରାଯାଇପାରେ । ସେ ଘଟନାବଳୀର ଅନୁଭୂତି ଗୁଡ଼ିକର ବର୍ଣ୍ଣନା ପ୍ରଣାଳୀ ।।୭୭।। ଉପରେ ବିଶ୍ୱାସ କରୁଥିଲେ ଏବଂ ଏ ଦିଗରେ ବିଜ୍ଞାନ ଉପରେ ତାଙ୍କର ପ୍ରଭାବ ଅନସ୍ୱୀକାର୍ଯ୍ୟ । ବିବର୍ତ୍ତନବାଦ ସମ୍ବନ୍ଧରେ ମଧ୍ୟ ତାଙ୍କର ଗୁରୁତ୍ୱପୂର୍ଣ୍ଣ ଅବଦାନ ରହିଛି ।।୭୮।। ସେ ପର୍ଯ୍ୟବେକ୍ଷଣରେ ବିଶ୍ୱାସ କରୁଥିଲେ, କିନ୍ତୁ, ପର୍ଯ୍ୟାୟୀକରଣ ଓ ମୀମାଂସା-ଦ୍ୱାରା ସମର୍ଥିତ ନ ହୋଇ ମଧ୍ୟ ନିଉଟନଙ୍କ ବର୍ଣ୍ଣ-ତତ୍ତ୍ୱ[Colour theory] ର ବିରୋଧ କରୁଥିଲେ ଏବଂ ସେଥିପାଇଁ ୧୮୧୦ ରେ ଦୁଇଭାଗରେ ୧୪୧୧ ପୃଷ୍ଠା ବିଶିଷ୍ଟ ଏକ ପୁସ୍ତକ ଲେଖିଥିଲେ ।।୭୯।। ଏହି ତତ୍ତ୍ୱ ମୂଳରେ ପର୍ଯ୍ୟବେକ୍ଷଣ ଥିଲା ସତ୍ୟ । କିନ୍ତୁ ପର୍ଯ୍ୟାୟନୁସରଣୀ ନ ଥିଲା । ମୀମାଂସା ନ ଥିଲା । ବରଂ ଥିଲା ନିଉଟନଙ୍କ ପ୍ରତି ଏକ ବିଦ୍ୱେଷ । ସୁତରାଂ ତାହାର ତାତ୍ପର୍ଯ୍ୟ ରହିଲା ନାହିଁ, ପ୍ରଭାବ ରହିଲା ନାହିଁ ।।୮୦।।

ପୁଣି ଲିଓନାର୍ଡୋ-ଡା-ଭିନ୍‌ସି, [୧୪୫୨-୧୫୧୯]ଙ୍କ କଥା ବିଚାର କରାଯାଉ । ପଞ୍ଚଦଶ ଶତାବ୍ଦୀର ଏହି ଅଦ୍ଭୁତ ଗୁଣାଗାର ଏକାଧାରରେ ଶିଳ୍ପୀ, ଚିତ୍ରକର, ବିଦ୍ଧାଣୀ, ଇଞ୍ଜିନିଅର, ଡାକ୍ତର, ପଦାର୍ଥବିତ୍ ଜୀବନ ବିଜ୍ଞାନବିତ୍ ଓ ଦାର୍ଶନିକ ଥିଲେ । ତାଙ୍କପରି ଖୁବ୍ କମ୍ ଗୁଣୀ ପୃଥିବୀରେ ଜନ୍ମଗ୍ରହଣ କରିଛନ୍ତି । "ପ୍ରିନ୍‌ସ"ର ଲେଖକ ମାକେଭାଲ [୧୪୬୭-୧୫୨୭]

---

୭୭ । Phenomenological description

୭୮ । Principle of metamorphosis of homologous parts in animals and plants.

୭୯ । Zur Farbenlehre

୮୦ । ସେହିପରି Purkinge ଙ୍କ କଥା ମଧ୍ୟ କୁହାଯାଇପାରେ । ସେ ୧୮୨୪-୨୫ ରେ Visual phenomenology ଉପରେ ଏକ ବହି ଲେଖିଥିଲେ ।

ପରେ ତାଙ୍କ ନିକଟକୁ ଲେଖିଥିଲେ—"ଆପଣଙ୍କର ଓ ମୋର ଭାଗ୍ୟ ଏକା । ନୂତନ ସତ୍ୟର ଆବିଷ୍କାର, ନୂତନ ଦେଶ ଆବିଷ୍କାରଠାରୁ ଅଧିକ ଭୀଷଣ ଓ ବିପଦ ଜନକ" । କିନ୍ତୁ ଏହି ମନୀଷୀଙ୍କର ନୋଟ୍ ବହି ଆଡ଼େ ଆଖି ପକାଇଲେ କଣ ଦେଖିବାକୁ ମିଳେ ? ? ପ୍ରକୃତ ବିଷୟରେ ତାଙ୍କର କୌତୂହଳ ଓ ଆଗ୍ରହ ଥିଲା କେବଳ ପ୍ରକୃତିର ବୈଚିତ୍ର୍ୟ ଯୋଗୁ । ସେ ଯନ୍ତ୍ର ତିଆରି କରୁଥିଲେ । କିନ୍ତୁ ଏହି ଯନ୍ତ୍ର ଗୁଡ଼ିକ, ସେ ଯାହା ଚାହୁଁଥିଲେ ସେହି ଘଟଣା ବା ପ୍ରଭାବ ସୃଷ୍ଟି କରିବାପାଇଁ ତିଆରି ହୋଇଥିଲା । ଅନ୍ୟ କଥାରେ ଏଠି ବିଜ୍ଞାନର ଧାରା ନ ଥିଲା ।

ଏଠାରେ ପର୍ଯ୍ୟବେକ୍ଷଣ ହୁଏତ ଥିଲା । ଶ୍ରେଣୀ ବିଭାଗ ହୁଏତ ଥିଲା । କିନ୍ତୁ ମୀମାଂସା ନଥିଲା । ସୁତରାଂ ନୂତନ ଦ୍ୟୋତନା ଆସିଲା ନାହିଁ । ନୂତନ ଅବବୋଧ ଆସିଲା ନାହିଁ ।

କାରଣ ଏହା ନୂତନ ଧାରା ବା ଶୃଙ୍ଖଳାର ସନ୍ଧାନ ଦେଇ ପାରିଲା ନାହିଁ । ଫଳରେ ନୂତନ ଦିଗନ୍ତର ଉନ୍ମୋଚନ ସମ୍ଭବ ହେଲା ନାହିଁ, ବା ନୂତନ ମଣିଷ-ପ୍ରକୃତି, ମଣିଷ-ଅନୁଷ୍ଠାନ, ବା ମଣିଷ-ମଣିଷ ସମ୍ପର୍କ ଗଢ଼ି ଉଠିବା ସମ୍ଭବପର ହେଲା ନାହିଁ ।

[ ଛଅ ]

ଏଇ ନୂତନ ଦ୍ୟୋତନା ଓ ଅବବୋଧ ମଧ୍ୟରେ ଆଧୁନିକ ଓ ଆଧୁନିକତାର ସଙ୍କା ଅନ୍ୱେଷଣ କରାଯାଇପାରେ ।

ଆଧୁନିକତା କ'ଣ ସେ ବିଷୟରେ ନାନା ମୁନିଙ୍କର ନାନା ମତ ରହିଛି । ଏବଂ 'ମୁନୀନାଂ ଚ ମତିଭ୍ରମ' ପରି ସେହି ମତ ଗୁଡ଼ିକ ମଧ୍ୟରେ ଭ୍ରମ

[ ୧୪-History of Experimental Psychology-Edwin G. Boring page 20, 99 ]

ମତ ମଧ୍ୟ ରହିଛି । କିନ୍ତୁ ପୂର୍ବରେ ଆଲୋଚିତ ପ୍ରକୃତିଠାରୁ ଆତ୍ମରକ୍ଷାର ପର୍ଯ୍ୟାୟ ଶେଷ ହୋଇଗଲା ପରେ ଆସିଲା ଯେଉଁ ନୂତନ ବିଶ୍ୱାସ, ନୂତନ ଆତ୍ମବିଶ୍ୱାସ, ନିଜର ଶକ୍ତି ଉପରେ ବିଶ୍ୱାସ, ମଣିଷ ଉପରେ ବିଶ୍ୱାସ—ସେଇ ବିଶ୍ୱାସ ମଧ୍ୟରେ ଏଇ ଆଧୁନିକ ଆଉ ଆଧୁନିକତାର ଧାରଣା ଓ ସଂଜ୍ଞା ଖୋଜା ଯାଇପାରେ ।

ମଣିଷ ଅନୁଷ୍ଠାନଗୁଡ଼ିକପାଇଁ ସୃଷ୍ଟି ନାହିଁ ବା ବଞ୍ଚିରହି ନାହିଁ । ଅନୁଷ୍ଠାନଗୁଡ଼ିକ ମଣିଷପାଇଁ ସୃଷ୍ଟି ରହିଛନ୍ତି । ଏହାହିଁ ଆଧୁନିକତାର କେନ୍ଦ୍ରୀୟ ଭାବସତ୍ତା [Ethos] । ମଣିଷ ଧର୍ମଯାଜକପାଇଁ ସୃଷ୍ଟି ନାହିଁ, ଧର୍ମଯାଜକମାନେ ମଣିଷପାଇଁ ସୃଷ୍ଟିରହିଛନ୍ତି । ପ୍ରଜା ରାଜା ପାଇଁ ସୃଷ୍ଟି ନାହିଁ । ରାଜା ପ୍ରଜା ପାଇଁ ସୃଷ୍ଟି । ଏହିପରି ସବୁ । ଏହା ପରମ୍ପରାକୁ ନୂତନ ଅବବୋଧର ଗୁଳାବାଟରେ ପକାଇ ବାଟ ତିଆରି କରିବାର ଉଦ୍ୟମ । ପୁରାତନର ନୂତନ ସହ ଅଭିଯୋଜନାର ପ୍ରଚେଷ୍ଟା । ପୃଥିବୀର ଇତିହାସରେ ସଂସ୍କୃତିର ଇତିହାସରେ ଏହି ଆତ୍ମରକ୍ଷା ପର୍ଯ୍ୟାୟର ଅବସାନ ହେଲା ପର୍ଯ୍ୟନ୍ତ ଯେତେବେଳେ ପ୍ରକୃତି ବା ପରିସ୍ଥିତି ଉପରେ କିଛିଟା ଅଧିକ କର୍ତ୍ତୃତ୍ୱ ଆସିଛି, ମିଳିଛି କିଛିଟା ମୁକ୍ତିର ପଥ, ଆସିଛି ବ୍ୟକ୍ତିତ୍ୱର କିଛିଟା ମୁକ୍ତି—ସେତେବେଳେ ଆସିଛି ଖଣ୍ଡିତାଂଶରେ ଏହିପରି ଦ୍ୟୋତନା ଆଉ ଅବବୋଧ । ଏବଂ ତା ସାଙ୍ଗକୁ ଆସିଛି ପ୍ରାଚୀନ ବନାମ ନବୀନ, ପୁରାତନ ବନାମ ଆଧୁନିକର ପ୍ରଶ୍ନ ॥ ୮୧ ॥

---

॥ ୮୧ ॥ ୧୬୯୦ରେ ପ୍ରକାଶିତ Templeଙ୍କ Essay upon the Ancient and Modern Learning ରୁ ୧୭୦୪ରେ ପ୍ରକାଶିତ ସୁଇଫ୍‌ଟଙ୍କ "Battle of the Books" ପର୍ଯ୍ୟନ୍ତ ଏହିପରି ଏକ ପ୍ରାଚୀନ—ନବୀନ ଦ୍ୱନ୍ଦ୍ୱ ଦେଖିବାକୁ ମିଳେ । R.F. Jonesଙ୍କ "Ancients anb Moderns"—a Study of the Background of the Battle of the Books, St louis, 1936 ରେ ଏହାର ବିବରଣୀ ମିଳେ । [Literary criticism Page 214-215]

ଅଷ୍ଟାଦଶ ଶତାବ୍ଦୀରେ ଦାର୍ଶନିକ ରୁସୋ ଗୋଟିଏ ଚିଠିରେ ଲେଖିଥିଲେ ଯେ—

ସମାଜରେ ପ୍ରଚଳିତ ନ୍ୟସ୍ତସ୍ୱାର୍ଥ, କ୍ଷମତାନ୍ଧତା, ଓ ଜୁଲମର୍ ବିରୋଧରେ ଦର୍ଶନ ବା ଚିନ୍ତାସ୍ତରରେ ମାନବିକତା, ଯୁକ୍ତିବାଦୀ ପରମ୍ପରା ଓ ସହନଶୀଳତା ସ୍ୱଦଧାରିହିଁ ଆଧୁନିକତା ॥୮୨॥ ଏହା ପୁରାତନ ପ୍ରବୃତ୍ତି ବିରୁଦ୍ଧରେ ବିଦ୍ରୋହ ନୁହେଁ, ପୁରାତନ ପ୍ରବୃତ୍ତିଠାରୁ ନୂତନ ପ୍ରବୃତ୍ତିର ବିରୋଧାଭାସ, ଏକ ଭିନ୍ନତା ବା ପୃଥକୀକରଣ ।

ଏହି ବିରୋଧାଭାସ, ଭିନ୍ନତା, ବା ନୂତନତାର ମୌଳିକ ବିପ୍ଳବ ହେଲା "ବିଜ୍ଞାନ" । ବିଜ୍ଞାନରେ ଆଧୁନିକ ବା ଆଧୁନିକତା ଦେଖାଯାଏ ନାହିଁ । କିନ୍ତୁ

---

୧୬୮୮ରେ Fontelle-ଗୋଟିଏ ବହି ଲେଖିଥିଲେ । [Hostoire des variations des eglises Protestantes] । ଏଥିରେ ବିଜ୍ଞାନର ଅଗ୍ରଗତିର ନଜିର ଦେଇ ସେ "ପ୍ରଗତି" [Progress] ର ଧାରଣା ଦେଇଥିଲେ । [୨୦-Clarke Page 285-286]

୮୨ । Rousseau in a letter dated Jan, 15, 1769- has described the humanitarianism, rationalism and tolerance of the philosophes, as "modernism" contrasting them,thus, with traditional privilege, authoritarianism and coercion prevailing in society as a whole. He meant to indicate, by modernism, not so much a conflict with, as a differentiation from the prevailing social attitude.

Encyclopaedia of Social Sciences, vol 9-10, Article on "Modernism" by Horace M. kallen page 564.

ବିଜ୍ଞାନହିଁ ଅର୍ଥନୀତି, ରାଜନୀତି, ଧର୍ମ, ସମାଜତନ୍ତ୍ର, କଳା, ସାହିତ୍ୟ-ସବୁଥିରେ ଆଧୁନିକତାର ପ୍ରବର୍ତ୍ତକ । ଏହାର କାରଣ ହେଲା ଏହି ବିଜ୍ଞାନ-ପ୍ରସୂତ ଉଦ୍ଭାବନ ଓ ଆବିଷ୍କାର ସକଳ ଓ ତାର ପରିଣତି ସ୍ୱରୂପ ଚିନ୍ତାସ୍ତରରେ ଉପୁଜୁଥିବା ଦ୍ୟୋତନା ଓ ଅବବୋଧ ଯୋଗୁ ମଣିଷ-ମଣିଷ ମଧ୍ୟରେ ଓ ଅନୁଷ୍ଠାନଗୁଡ଼ିକ ମଧ୍ୟରେ ପାରସ୍ପରିକ ସମ୍ପର୍କର ପରିବର୍ତ୍ତନ ଓ ସମନ୍ୱୟ ଆବଶ୍ୟକ ହୋଇଥାଏ । ତେଣୁ ଏହି ଦୃଷ୍ଟିରୁ କୌଣସି ନୂତନ ଆବିଷ୍କାର ବା ଉଦ୍ଭାବନ ଯୋଗୁ ଯେତେବେଳେ ସାମାଜିକ ସମ୍ପର୍କ-ଓ ଚିନ୍ତାଧାରାର ଶୃଙ୍ଖଳାରେ ଆଲୋଡ଼ନ, ଓ ବିପର୍ଯ୍ୟୟ ସୃଷ୍ଟି ହୁଏ ଏବଂ ସେହି ଆଲୋଡ଼ନ ଓ ବିପର୍ଯ୍ୟୟର ବାଧ୍ୟତାରୁ ନୂତନ ପରିସ୍ଥିତି ବା ସମ୍ପର୍କ-ଜାଲ ସହ ପୁରାତନର ଅଭିଯୋଜନାର ଆବଶ୍ୟକତା ଉପୁଜେ, ସେତେବେଳେ ଆଧୁନିକତାର ଉଦ୍ଭବ ହୁଏ ବୋଲି କୁହାଯିବ ।[୮୩]।

ସୁତରାଂ ଆଧୁନିକତାର ସନ୍ଧାନ କରିବା ପୂର୍ବରୁ ପ୍ରଥମେ ଏଇ ମୂଳ ଭାବସତ୍ତା, ମୂଳତନ୍ତ୍ର, ଦ୍ୟୋତନା ବା ଅବବୋଧଟିକୁ ଖୋଜିବାକୁ ପଡ଼ିବ । ଏଇ ମୂଳ ଦ୍ୟୋତନା ବା ଅବବୋଧକୁ ବାଦଦେଇ ଆଧୁନିକତାର ଅର୍ଥ ଖୋଜାଯାଇ ପାରିବନାହିଁ ବା ଆଧୁନିକତାର ବ୍ୟାଖ୍ୟା କରିହେବ ନାହିଁ । ଏହି ଦୃଷ୍ଟିରୁ ଆଧୁନିକତାର ଧାରଣା ମଧ୍ୟ ଆପେକ୍ଷିକ । ମୂଳ ଭାବ ସତ୍ତା ବା ଦ୍ୟୋତନା ବଳବତ୍ତର ଥିବାପର୍ଯ୍ୟନ୍ତ ତହିଁରୁ ଉପୁଜୁଥିବା ଅବବୋଧ ଜନିତ

---

୮୩ । The modernistic attitude, in sum, arises, where a fission develops in the social and intellectual order because a new innovation or discovery has become powerful enough to impose adjustment to itself upon the resistant environment which it has entered as an interloper. [ Encyclopaedia of Social Sciences, vol 9-10 page 566 ]

ଯେଉଁ କ୍ରିୟାଶୀଳତା ବା ଯାସ୍ତୁ ଢକ ପରିବର୍ତ୍ତନ ତାକୁ ଆଧୁନିକ କୁହାଯାଇ ପାରିବ । କିନ୍ତୁ ଯେଉଁ ଯନ୍ତ୍ର ବା ଦ୍ୟୋତନା ଅନ୍ୟ କୌଣସି ନୂତନ ଷ୍ଠବଯନ୍ତ୍ର ବା ନୂତନ ଦ୍ୟୋତନା ଦ୍ୱାରା ଅବଦମିତ ହୋଇଗଲେ ପରବର୍ତ୍ତୀ ନୂତନ ଷ୍ଠବଯନ୍ତ୍ର ଓ ନୂତନ ଦ୍ୟୋତନା ଯେଉଁ ନୂତନ ଅବବୋଧ ସୃଷ୍ଟି କରେ, ତାର କ୍ରିୟାଶୀଳତାର ପରିଣତ ସ୍ୱରୂପ ଆସେ ଯେଉଁ ଯାସ୍ତୁ ଢକ ପରିବର୍ତ୍ତନ ତାକୁ "ଆଧୁନିକ" ରୂପେ ଯଥାର୍ଥଭାବେ ନାମିତ କରାଯାଇ ପାରେ ॥ ୮୪ ॥

ଏଠାରେ ବିଚାରର ବିଷୟ ହେଉଛି—ଠିକ ଏଇ ଅର୍ଥରେ ସଂସ୍କୃତିର ବିଭିନ୍ନ ବିଭାବ ମଧ୍ୟରେ 'ଯୁଗ' ବିଭାଗ ଗୁଡ଼ିକ ଗ୍ରହଣ କରିହେବ କି ନା । ଇତିହାସରେ ଉତ୍ପାଦନପ୍ରଣାଳୀର ଆଙ୍ଗିକ ଦୃଷ୍ଟିରୁ ପ୍ରସ୍ତରଯୁଗ, ତାମ୍ରଯୁଗ, ଲୌହଯୁଗ ଇତ୍ୟାଦି, ଐତିହାସିକ କାଳ ଦୃଷ୍ଟିରୁ ପ୍ରାଚୀନଯୁଗ, ଅନ୍ଧକାର ଯୁଗ, ମଧ୍ୟଯୁଗ, ଆଧୁନିକଯୁଗ ଇତ୍ୟାଦି, ସାହିତ୍ୟରେ ପ୍ରାଚୀନଯୁଗ, ମଧ୍ୟଯୁଗ ଆଧୁନିକଯୁଗ, ସାଂପ୍ରତିକଯୁଗ ଇତ୍ୟାଦି । ସେହିପରି କଳାରେ ବା ସଂସ୍କୃତିର ଅନ୍ୟ କୌଣସି ବିଭାବରେ । ଐତିହାସିକତା ଦୃଷ୍ଟିରୁ ପ୍ରାଚୀନ ଓ ଆଧୁନିକ ଏହିପରି ଦୁଇଯୁଗର କାଳ ବିଭାଜନ ଏକ ପୁରାତନ ଗ୍ରୀକ ପରମ୍ପରା । ପରେ ଐତିହାସିକମାନେ ଏହାକୁ "ପ୍ରାଚୀନ-ମଧ୍ୟ-ଆଧୁନିକ"ରେ ପରିଣତ କରିଥିଲେ । ତା ସହ ପରେ "ଅନ୍ଧକାର"ଯୁଗ ବି କେଉଁଠି କେଉଁଠି ଯୋଡ଼ିହୋଇ ଯାଇ-ଥିଲା । ଐତିହାସିକ କାଳ ମଧ୍ୟରେ, ସମାଜର ବିବର୍ତ୍ତନ ପଥରେ ନୂତନ ଦ୍ୟୋତନା ଓ ନୂତନ ଅବବୋଧର ଉଦ୍ଭରଣ ଦୃଷ୍ଟିରୁ ଏଇ କାଳବିଭାଜନ ଗୁଡ଼ିକ ଯେ ସବୁଠି ଯୁକ୍ତିଯୁକ୍ତ ବା ପ୍ରାସଙ୍ଗିକ ତା' କହିହେବ ନାହିଁ । କାରଣ ଏକଥା ସତ ନୁହେଁ ଯେ—ସବୁବେଳେ ଏକ ନୂତନ ଆଙ୍ଗିକ ନୂତନ ଅବବୋଧ ସୃଷ୍ଟି କରିବ । ପୁଣି ଏକଥା ସତ ନୁହେଁଯେ ନୂତନ ଅବବୋଧ ଆସି,

---

॥ ୮୪ ॥ Had ancient times conspir'd to disallow what then was new, what had been ancient now ?
Pope—In Epistle to Augustus.

ତଦ୍‌ଜନିତ ଆନ୍ତଃଆନୁଷ୍ଠାନିକ ସମନ୍ୱିତ ବିକାଶ ନହେଲେ ମଧ୍ୟ ଐତିହାସିକ କାଳ ଉପରେ ତାର ପ୍ରଭାବ ପଡ଼ିବ ।

ଅବବୋଧ ସେତିକିବେଳେ ଆସିବ, ଯେତେବେଳେ ତାହା ଚେତନାର ସ୍ତରରେ ଉଦ୍ଦୀପିତ ହେବ । ପରିବର୍ତ୍ତିତ ପରିସ୍ଥିତି ସହ ଯୋଗାଯୋଗ ସ୍ଥାପନରେ ବାଧତାରୁ ଆସୁଛି ଏକ ପ୍ରକାରର ସମ୍ବେଦନା, ଦ୍ୟୋତନା ଓ ଅବବୋଧ । ଏଇ ବାଧତା ପରିସ୍ଥିତିପ୍ରତି ଦୃଷ୍ଟି ଆକର୍ଷଣ କରେ ଓ ଏକ ମନୋଯୋଗ ସୃଷ୍ଟି କରେ । ଏହି ମନୋଯୋଗ ଏକ ପ୍ରକାରର ବିଶ୍ଳେଷଣ ଓ ମନୋନିବେଶନ । ଏହା ଆଗ୍ରହର ଇଚ୍ଛାବସ୍ଥା । ମନୋଯୋଗ ଫଳରେ ସୃଷ୍ଟି-ହୁଏ ଆଗ୍ରହ । ଏହା ମନୋଯୋଗର ଅନୁଭବାବସ୍ଥା । ଏହି ଅବସ୍ଥାରେ ଆତ୍ମପ୍ରକାଶ କରେ ଏକ ବ୍ୟଞ୍ଜନା ବା ଏକ ସମ୍ବେଦନା କ୍ଷେତ୍ର । ଆଗ୍ରହ ବା ମନୋଯୋଗର ଆବଶ୍ୟକତା ଥାଏ ସେଇଠି, ଯେଉଁଠି ବାଧତା ବା ପ୍ରତିକ୍ରିୟା ପର୍ଯ୍ୟାପ୍ତ ନୁହେଁ । ସୁତରାଂ ଯେଉଁଠି ନୂତନ ପରିସ୍ଥିତି ପ୍ରତି ପ୍ରତିକ୍ରିୟା ଅପର୍ଯ୍ୟାପ୍ତ ଏବଂ ସେହି ହେତୁ ଯେଉଁ ଦ୍ୱନ୍ଦ୍ୱ ଜାତହେଉଛି, ତା ଫଳରେଉପୁଜୁଛି ବ୍ୟଞ୍ଜନା, ସମ୍ବେଦନାକ୍ଷେତ୍ର ବା ଦ୍ୟୋତନା ବା ଅବବୋଧ । ଏହି ଦ୍ୟୋତନା ବା ଅବବୋଧ ଚେତନାର ଏକ ଦେହଳୀ [Threshhold] । ଦ୍ୱନ୍ଦ୍ୱ ପର୍ଯ୍ୟାପ୍ତ ନହେଲେ ଦ୍ୟୋତନା ପରିସ୍ଫୁଟ ବା ବିକଶିତ ହୁଏନାହିଁ । ଅନୁନ୍ମୀଳିତ ବା ଅବଚେତନ ଅବସ୍ଥାରେ ରହେ-ଯାହା ଏକ ପ୍ରକାରର ଉଚ୍ଛ୍ୱାସ, ଆବେଗ, ଶୃଙ୍ଖଳ୍ ବା ଅଶ୍ୱସ୍ତି । ଦ୍ୟୋତନା ବା ଅବବୋଧହିଁ ଜାଗ୍ରତ ଚୈତନ୍ୟର ପୂର୍ବାବସ୍ଥା । ଅବଚେତନ ବା ମଗ୍ନ ଚେତନ ନୁହେଁ । ଉଜ୍ଜୀବିତ ଅଥଚ ଜଳୁନାହିଁ । କୁହୁଳୁଚ ଅଥଚ ଜଳୁନାହିଁ । ଯେମିତି ଏକ ତପ୍ତ ଜ୍ୱଳନ୍ତ ଅଙ୍ଗାରଖଣ୍ଡ । "କ୍ରିୟାଶୀଳତା"ର ପୂର୍ବ ଅବସ୍ଥା । କ୍ରିୟାଶୀଳ ହେବାପାଇଁ ଯେଉଁ ନିମ୍ନତମ ପୂର୍ବାପର ଅବସ୍ଥା ଦରକାର ଠିକ୍ ସେଇ ଅବସ୍ଥା । କ୍ରିୟାଶୀଳ ଅଥଚ ଗତି ଆରମ୍ଭ ହୋଇନାହିଁ ।

---

## ( ସାତ )

ଏଠାରେ ଭାରତୀୟ ସମାଜ ଓ ସାମାଜିକ ଭିତ୍ତିଭୂମିର ପରିପ୍ରେକ୍ଷୀରେ "ଆଧୁନିକ ଅବବୋଧ" ସମ୍ପର୍କୀୟ ଉପରୋକ୍ତ ବ୍ୟାଖ୍ୟାନର କେତେଦୂର ତାତ୍ପର୍ଯ୍ୟ ଅଛି, ଏଇ ପ୍ରଶ୍ନଟି ଆପଣା ଛାଏଁ ଆସି ଯାଉଛି । ଏ ସମ୍ପର୍କରେ ଭାରତୀୟ ସମାଜର ପରମ୍ପରା କଣ ଓ ସେଇ ପରମ୍ପରାର ଉତ୍‌କ୍ରମଣରେ ଗଢ଼ି ଉଠିଥିବା ଆଜିର ସମାଜରେ ଏହି ବ୍ୟାଖ୍ୟାନ କେତେଦୂର ପ୍ରାସଙ୍ଗିକ, ସେ ପ୍ରଶ୍ନଟି ମଧ୍ୟ ଆସୁଛି ।

ଆମ ସମାଜ, ସାମାଜିକ ସ୍ଥିତି, ଧର୍ମ ଓ ଦର୍ଶନ ବିଷୟରେ ବହୁତ ଲୋକ ବହୁତ ଜାଗାରେ ବହୁତ କଥା କହିଛନ୍ତି । ଆମର ସମାଜ ପାରମ୍ପରିକ ଧର୍ମଭିତ୍ତିକ, ଆଧ୍ୟାତ୍ମିକ ଇତ୍ୟାଦି ଇତ୍ୟାଦି । ଆମର ସ୍ମୃତି "ଏକମେବା ଦ୍ୱିତୀୟମ୍", "ସୋଽହଂ", "ତତ୍ତ୍ୱମସି", "ସର୍ବଂଖଲ୍ୱିଦଂ ବ୍ରହ୍ମଃ" ଇତ୍ୟାଦି ଇତ୍ୟାଦି । ଏହିପରି ବ୍ୟାଖ୍ୟା ସବୁ ଗତାନୁଗତିକ, ପରିଚିତ ଏବଂ ଯାହା ଆମେ ଜାଣିଛୁ ତାଠାରୁ ଅଧିକ କଥା ପ୍ରକାଶ କରିନାହିଁ । ଏହିପରି ବ୍ୟାଖ୍ୟା ଗୁଡ଼ିକୁ ଭାରତୀୟ ପରମ୍ପରା ସହ ଖାପ ଖୁଆଇ ଆମେ କହିପାରୁ ଯେ— କେତେଗୁଡ଼ିଏ ପ୍ରାଗନୁଭବିକ ଜ୍ଞାନକୁ ଯୁକ୍ତି ସାହାଯ୍ୟରେ ଗୁନ୍ଥି ଆମ ଆଗରେ ରଖାଯାଇଥିଲା ।

ପ୍ରାଚୀନ କାଳରୁ ଆମ ସମକ୍ଷରେ, ଆମ ସମାଜ ସମକ୍ଷରେ କେତେକ ଦିଗ୍‌ଦର୍ଶନ ଓ ନିର୍ଦ୍ଦିଷ୍ଟ ଆଭିମୁଖ୍ୟ ରଖାଯାଇଥିଲା । ବ୍ୟଷ୍ଟି ଚିନ୍ତା ପରିବର୍ତ୍ତେ ସମାଜର ସ୍ଥାୟିତ୍ୱ ଥିଲା ସାମାଜିକଚିନ୍ତା ଓ ସାମାଜିକ ଅନୁଷ୍ଠାନଗୁଡ଼ିକର ମୂଳ ପ୍ରତିବେଦନା । ବ୍ୟଷ୍ଟି ସାମାଜିକବ୍ୟବସ୍ଥାର ଏକକ ନ ଥିଲା । ସାମ୍ୟ ପରିବର୍ତ୍ତେ ଭାରସାମ୍ୟ, ଓ ସ୍ୱାଧୀନତା ପରିବର୍ତ୍ତେ ଶାନ୍ତି ଥିଲା ଆଭିମୁଖ୍ୟ । ରାଜା ଧର୍ମ ଓ ରାଜନୀତିର ସମନ୍ୱୟର ପ୍ରତୀକରୂପେ କାର୍ଯ୍ୟ କରୁଥିଲା ଏବଂ ରାଜଶକ୍ତି ସମାଜର ଅନିଶ୍ଚିତତା ଓ ଅସ୍ଥିରତା ଦୂର କରିବାପାଇଁ ଉଦ୍ଦିଷ୍ଟ ଥିଲା । ଧର୍ମ, ଧାର୍ମିକକୁ ରକ୍ଷା କରୁଥିଲା ଓ ଧାର୍ମିକ ଧର୍ମକୁ ରକ୍ଷା କରୁଥିଲା । ବ୍ୟକ୍ତି

ଓ ରାଷ୍ଟ୍ର ମଧ୍ୟରେ ବିରୋଧ ନ ଥିଲା । ଧର୍ମ, ଅର୍ଥ, କାମ ଓ ମୋକ୍ଷ ଏଇ ଚାରୋଟି ପୁରୁଷାର୍ଥ ଥିଲା ॥୮*॥ ଜାତି ଅନୁସାରେ "ବର୍ଣ୍ଣ" ଓ ଜୀବନର ଅବସ୍ଥା ଓ ଅଧିକାର ଅନୁସାରେ "ଆଶ୍ରମ" ମିଶି ବର୍ଣ୍ଣାଶ୍ରମ ଗଢ଼ା ଯାଇଥିଲା ଏବଂ ସବୁ ବର୍ଣ୍ଣ ସ୍ୱଧର୍ମ ପାଳନ କରୁଥିଲେ । ବ୍ୟକ୍ତି ଥିଲା ସୁଖୀ, ଅନଭିଳାଷୀ ଓ ଗୃହସ୍ଥ । ତାର ମାନସିକ ଶୃଙ୍ଖଳା ଏପରି ଭାବରେ ଗଢ଼ାଯାଇଥିଲା ଯେ ସେ ଏଇ ସଂସାରର ବା ଏଇ ଜନ୍ମର ଭଲ କାମଗୁଡ଼ିକ ପରବର୍ତ୍ତୀ ଜନ୍ମରେ ଉଚ୍ଚତର ମାନ ହାସଲ କରିବାପାଇଁ ନିୟୋଜିତ କରୁଥିଲା । ଏଇ ଅଭିଳାଷ ଚରିତାର୍ଥ କରିବା ଦିଗରେ ରାଷ୍ଟ୍ର ତାକୁ ସାହାଯ୍ୟ କରୁଥିଲା ଓ ବ୍ୟକ୍ତିର ଆଧ୍ୟାତ୍ମିକ ପରିସୀମା ପ୍ରସାରିତ ହେବାର ସୁଯୋଗ ବି ମିଳୁଥିଲା । ସାମାଜିକ ବ୍ୟବସ୍ଥା ଓ ଅନୁଷ୍ଠାନ ଗୁଡ଼ିକ ସମାଜର ବିଭିନ୍ନ ଶ୍ରେଣୀ ମଧ୍ୟରୁ କୌଣସି ଗୋଟିଏ ଶ୍ରେଣୀ ଉପରକୁ ଉଠିଯିବା ବା ଅଭିପ୍ରେତ ଭୋଗ ଓ ଅଧିକାରଠୁ ଅଧିକ ହାସଲ କରିବାପାଇଁ ଉଦ୍ଦିଷ୍ଟ ନ ଥିଲା । ତେଣୁ ଶ୍ରେଣୀ-ଶ୍ରେଣୀ ମଧ୍ୟରେ ବିଦ୍ୱେଷ ବା ପ୍ରତିଯୋଗିତା ହେବାର ପ୍ରଶ୍ନ ନଥିଲା । ଶ୍ରେଣୀ ମଧ୍ୟରୁ ଆତ୍ମଗ୍ଲାନି ଓ ଅସନ୍ତୋଷ ଦୂର କରିବାର ମାଧ୍ୟମ ଥିଲା ଧର୍ମ ଓ ସାମୟିକ ଧର୍ମୀୟ ଆନ୍ଦୋଳନ ।

---

॥୮*॥ ଭାରତୀୟ କାବ୍ୟତତ୍ତ୍ୱ ଭିତରେ ଏଇ ସାମାଜିକ ଭାବଧାରା ଦେଖିବାକୁ ପାଉ "କାବ୍ୟ ପ୍ରୟୋଜନ" ମଧ୍ୟରେ । ଭରତ ତାଙ୍କ ନାଟ୍ୟଶାସ୍ତ୍ରରେ ଚତୁର୍ବର୍ଗ ଫଳ ପ୍ରାପ୍ତିକୁ କାବ୍ୟ ପ୍ରୟୋଜନର ଅନ୍ୟତମ ଅଙ୍ଗଭାବରେ ଗ୍ରହଣ କରିଥିଲେ । ଭାମହ [୭ମ ଶତାବ୍ଦୀ], ବାମନ [୯ମ ଶତାବ୍ଦୀ], ଆଚାର୍ଯ୍ୟ କୁନ୍ତକ [ଦଶମ ଶତାବ୍ଦୀ], ପୁରୁଷାର୍ଥ ଚତୁଷ୍ଟୟ—ଚତୁର୍ବର୍ଗ ଫଳକୁ କାବ୍ୟଫଳ—ଉପଭୋଗର ଫଳରୂପେ ଗ୍ରହଣ କରିଥିଲେ । ବିଶ୍ୱନାଥ କବିରାଜ [୧୪ଶ ଶତାବ୍ଦୀ] ଚତୁଃଷଷ୍ଠୀ କଳାସହ ଚତୁର୍ବର୍ଗ ଫଳକୁ କାବ୍ୟ ପ୍ରୟୋଜନର ଅନ୍ତର୍ଭୁକ୍ତ କରିଥିଲେ ।

ଏହାଛଡ଼ା ବିଭିନ୍ନ ସମୟରେ ହିତୋପଦେଶ, ଲୋକଶିକ୍ଷା, ବ୍ୟାବହାରିକ ଜ୍ଞାନପ୍ରସାର, ବ୍ୟବହାରଶିକ୍ଷା, ବୁଦ୍ଧିବିକାଶ, ବିପତ୍ତିରୁ ରକ୍ଷା, ଅମଙ୍ଗଳନାଶ ପ୍ରଭୃତି କାବ୍ୟ ପ୍ରୟୋଜନର ଅନ୍ତର୍ଭୁକ୍ତ କରାଯାଇଥିଲା ।

[ଭାରତୀୟ କାବ୍ୟତତ୍ତ୍ୱ-ଡଃ କ୍ଷେତ୍ରବାସୀ ନାୟକ, ୧୯୮୧ ପୃ ୩୦-୩୨]

ଏଇଭଳି ଏକ ସମାଜରେ ସାମାଜିକ ବାଧ୍ୟତାରୁ ଉପୁଜୁଥିବା ସମାଜ ବ୍ୟବସ୍ଥା ଗୁଡ଼ିକୁ ଏକ "ଶାଶ୍ୱତ ନିୟମ"ର ବ୍ୟାଖ୍ୟା ଆଉ ରୂପ ଦିଆଯାଇଥିଲା ଏବଂ ସେହି ଭିତ୍ତିରେ ସମାଜର ସବୁ ଚାରଣା ଆଉ ବିଧି ନିଷେଧ ଗୁଡ଼ିକର ପ୍ରବର୍ତ୍ତନ କରାଯାଇଥିଲା । ପୂର୍ବପୁରୁଷମାନେ ଯେଉଁ ବାଟରେ ଚାଲିଯାଇଛନ୍ତି, ଯେଉଁ ପରମ୍ପରା ଥୋଇ ଯାଇଛନ୍ତି, ଯେଉଁ ବିଧି ନିଷେଧ ରଖିଯାଇଛନ୍ତି ସେ ଗୁଡ଼ିକ ମଧ୍ୟରୁ ଯାହା କିଛି ଅବଶେଷ ଅଛି, ସେହି ଗୁଡ଼ିକର ସଙ୍କଳନ, ବିଚାର ଆଲୋଚନା ଓ ସମୀକରଣ କରିବାରେ ବୌଦ୍ଧିକତା ସୀମାବଦ୍ଧ ଥିଲା ।।୮୬।।

---

ରସ-ବୋଧ ଓ ତଜ୍ଜନିତ ଚିତ୍ତବିସ୍ତାର, ହୃଦୟ-ସମତା ଓ ଆନନ୍ଦବୋଧର ତତ୍ତ୍ୱ ଏବଂ ସେହିପରି ଭାରତୀୟ ସଂଗୀତର ରସଭିତ୍ତିକ ଦଶ ଲକ୍ଷଣଯୁକ୍ତ "ରାଗ" ତତ୍ତ୍ୱ ସମ୍ବନ୍ଧରେ ଭାରତୀୟ ସମାଜର ଭିତ୍ତି-ଭୂମିର ସ୍ୱାତନ୍ତ୍ର୍ୟ ଦୃଷ୍ଟିରୁ ସ୍ୱତନ୍ତ୍ର ବିଚାରର ଅବକାଶ ରହିଛି ବୋଲି ମନେ ହୁଏ । ରସ ଅଲୌକିକ, ଆସ୍ୱାଦ୍ୟ ବସ୍ତୁ, ସବିକଳ୍ପ, ଜ୍ଞାନର ସାମଗ୍ରୀ ନୁହେଁ—ଜ୍ଞାନ, ଅନୁଭୂତ ସିଦ୍ଧ ଓ କାର୍ଯ୍ୟ ନୁହେଁ—ଏକ କାରଣ [ଭାରତୀୟ କାବ୍ୟତତ୍ତ୍ୱ--ପୃ ୭୯, ୮୭] । ସୁତରାଂ କାବ୍ୟ ଜରିଆରେ ଏକ ଅନୁଭୂତ-ସିଦ୍ଧ, ସବିକଳ୍ପ, ଆସ୍ୱାଦ୍ୟ ଜ୍ଞାନ ଆହରଣ ଓ ସେହିଜ୍ଞାନ ଉପଲବ୍ଧ ଅନୁଭୂତ ବା ଅନୁଭୂତ ଉପଲବ୍ଧ ଜ୍ଞାନ ସାହାଯ୍ୟରେ ଏକ ବିଷୟାନ୍ତର ଜଗତକୁ ଚାଲିଯିବା ହିଁ ରସତତ୍ତ୍ୱ । ଏହା **Catharsis, purgation** ବା **sublimation** ଠାରୁ ପୃଥକ ମନେ ହୁଏ । ସେହିପରି ଆନନ୍ଦ ତତ୍ତ୍ୱ ସମ୍ବନ୍ଧରେ ଭାରତୀୟ ସମାଜର ଭିତ୍ତିଭୂମିର ସ୍ୱାତନ୍ତ୍ର୍ୟ **ଦୃଷ୍ଟିରୁ** ସ୍ୱତନ୍ତ୍ର ବିଚାରର ଅବକାଶ ରହିଛି ବୋଲି ମନେ ହୁଏ ।

।।୮୬।। ୬୬ (କ)-Chap. XI—Article by J. Duncan M. Derrett on "Social and political thought and Institutions" pages 24-40. ଉପରୋକ୍ତ ଧାରଣାର ଗୁଡ଼ିକ ଏହି ନିବନ୍ଧରେ ଅତି ପ୍ରାଞ୍ଜଳ ଓ ବିଶଦଭାବେ ବୁଝାଇ ଦିଆଯାଇଛି ।

ଭାରତୀୟ ସମାଜର କ୍ରମ ବିବର୍ତ୍ତନ ଧାରାରେ କ୍ରମେ ଅନେକ ଗୁରୁତ୍ୱ ପରିବର୍ତ୍ତନ ଆସିଛି । ସାମାଜିକ ପରିବର୍ତ୍ତନ, ରାଜନୈତିକ ପରିବର୍ତ୍ତନ, ସଂସ୍କାରମୂଳକ ପରିବର୍ତ୍ତନ, ଅର୍ଥନୈତିକ ପରିବର୍ତ୍ତନ, ଅନୁଷ୍ଠାନଗତ ପରିବର୍ତ୍ତନ ଇତ୍ୟାଦି । ଧର୍ମ ହୁଏତ ବେଶୀ ବଦଳି ନାହିଁ, କିନ୍ତୁ ତାର କର୍ମକାଣ୍ଡ ବଦଳିଯାଇଛି । ଦେବତା ହୁଏତ ବଦଳି ନାହାନ୍ତି କିନ୍ତୁ ତାଙ୍କର ଉପଚାର ବହୁତ ବଦଳି ଯାଇଛି । 'ମୋକ୍ଷ' ପରମାର୍ଥରୁ ପ୍ରାୟ ମୁକ୍ତି ମିଳିଛି । ରାଜନୈତିକ ଅବା ସାମାଜିକ ଅସ୍ପୃଶ୍ୟତାର ପ୍ରଶ୍ନ ଆଉ ନାହିଁ । ସୁତରାଂ ରଜା ଗଲେଣି, ତା ସାଙ୍ଗକୁ ମଳଦମ, ସରବରାକାର, ଗଉନ୍ତିଆ, ଲମ୍ବରଦାର, ଖରପୋଷଦାର ଓ ଅନ୍ୟାନ୍ୟ ମୁକ୍ତସୁଲିମାନେ । "ବ୍ୟକ୍ତି" [ Individual ] ଆସିଛି । ତା ସାଙ୍ଗକୁ ଆସିଛି ମୌଳିକ ଅଧିକାର, ନାଗରିକ ସ୍ୱାଧୀନତା, ସାମାଜିକ ନ୍ୟାୟ ଓ ଆଉରି କେତେ ସାଂବିଧାନିକ ପ୍ରତିଶ୍ରୁତି ଓ ଅଙ୍ଗୀକାର ।

କିନ୍ତୁ ଏଇ ଅଭ୍ୟୁତ୍‌ଥାନ ଓ ବିକାଶଧାରାର ଗତି ଓ ଦିଗ ସରଳରୈଖିକ ନୁହେଁ କିମ୍ବା ନୀଳାବତୀ ସୂତ୍ର ଅନୁଯାରେ ପରିଚାଳିତ ହେଉଛି ବୋଲି କୁହା ଯାଇପାରିବ ନାହିଁ । ଏହା ଯୌଗିକ ଓ ସାମଗ୍ରିକ । ଏଠି ଏକ ପ୍ରାନ୍ତରେ ଅଛି ଗ୍ରୀଶଭାଗରୁ ଉଣାଭାଗ ଲୋକ ଦାରିଦ୍ର୍ୟର ସୀମାରେଖା ତଳେ । ପୁଣି ଗ୍ରୀଶଭାଗରୁ ଭାଗେ ଆଦିମ ମାନବ—ଆମ ଆଖିରେ Homo Faber ବା Homo pictorରୁ ନୁତନଭାବେ ଉନ୍ନୀତ ଓ ପରିଣତ ହୋଇଥିବା Homo Sapiens ସେଠି ଆଦିମ ଯାଯାବର ଓ ପଶୁପାଳନର ଜୀବନ ସାଙ୍ଗକୁ ଦେଖିବାକୁ ମିଳେ କୃଷି-ଭିତ୍ତିକ ସମାଜର ଆରମ୍ଭ । ପୋଡ଼ୁଚାଷ ସାଙ୍ଗକୁ ଡଙ୍ଗରଚାଷ, ଅଛିବା ଆଉ ମୁଢା, ଖରଡ଼ା ଆଉ ବଉଳା । ଏମାନଙ୍କୁ ଦୂରରୁ ଦେଖୁଥିଲୁ ।

ଦୂରବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ଦେଖୁଥିଲୁ । ବର୍ତ୍ତମାନ ଅଣୁବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ଦେଖୁଛୁ । ପ୍ରକୃତର ଦୃଶ୍ୟ ଭାବରେ ଦେଖୁଥିଲୁ । ନାରୀର ନଗ୍ନତାରେ ସାହାଯ୍ୟକାରୀ ବା ବିନୋଦନକାରୀ ଭାବରେ ଦେଖୁଥିଲୁ । ବର୍ତ୍ତମାନ ମଣିଷ ଭାବରେ ଦେଖିବାକୁ ଆରମ୍ଭ କରିଛୁ । ତା ସାଙ୍ଗକୁ ରହିଛି ଶିଗଡ଼ ସମାଜ, ପରମ୍ପରାଗତ କୃଷିଭିତ୍ତିକ ଔପନିବେଶିକ ସମାଜ । ତାର ପାଖେ ପାଖେ ଦେଖୁଛୁ ସାଇକେଲ, ଲୁନା, ସ୍କୁଟର, ମୋଟରକାର, ରେଲଗାଡ଼ି, ଉଡ଼ାଜାହାଜ, ହେଲିକପ୍ଟର, ଆଉ ବୋଏଇଙ୍ଗ ବିମାନ । ପାରମ୍ପରିକ କୃଷି ସାଙ୍ଗରେ ଦେଖୁଛୁ ଧାଡ଼ିକୃଷି, କଳଲଙ୍ଗଳ, ଉନ୍ନତ ବିହନ, କୀଟନାଶକାରୀ ଔଷଧ, ଆଉ ଟ୍ରାକ୍ଟର । ଗାଁର ଆଦିମ ବିନିମୟ ପ୍ରଣାଳୀ ସାଙ୍ଗକୁ ଫାଟକା ବଜାର, ଚେଞ୍ଜମାର୍କେଟ । ନଡ଼ିଆ ବଟିଆ, ମଶାଲ, ମଲିଙ୍ଗତେଲ, କଜ୍ଜଳତେଲ, କିରାସିନି, ନଣୁଣ ସାଙ୍ଗକୁ ଲ୍ୟାମ୍ପ, ଟର୍ଚ୍ଚ, ବିଜୁଳି, ଆଉ ବିଜୁଳିର ଯନ୍ତ୍ରପାତି ଯେତେକ । ନୂଆ ନୂଆ ସହର ଗଢ଼ି ଉଠିଛି । ପୁରୁଣା ସହର ବଡ଼ ସହରରେ ପରିଣତ ହୋଇଛି । ଗାଁ ସବୁ ସହରରେ ପରିଣତ ହୋଇଛି । ଗାଁରୁ ସହରକୁ ଲୋକେ ଆସୁଛନ୍ତି । ସହରର ଲୋକେ ଗାଁକୁ ଯାଉନାହାନ୍ତି । ସହରରେ ଗାଁ ସୃଷ୍ଟି ହୋଇଛି । କାରିଗର, କୁଟିରଶିଳ୍ପ ସାଙ୍ଗକୁ କଳକାରଖାନା, ମାଲିକ, ଶ୍ରମିକ, ଟ୍ରେଡ୍‌ଇଉନିୟନ୍, ଷ୍ଟ୍ରାଇକ୍, ଲକ୍‌ଆଉଟ ଆସିଛି । ଶଙ୍କରାଚାର୍ଯ୍ୟ, ମଠ, ମହନ୍ତ, ତନ୍ତ୍ର, ଯୋଗ ସାଙ୍ଗକୁ ଅଛି ଜ୍ୟୋତିଷ, ବହୁ ଭେକଧାରୀ ନୂତନ ଗୁରୁ ଆଉ ସମ୍ପ୍ରଦାୟ । ଜଡ଼ି, ବୁଟି, ମନ୍ତ୍ର, ଝଡ଼ା, ଫୁଙ୍କା, କାଳିସୀ, ଇନ୍ଦ୍ରଜାଲ ସାଙ୍ଗକୁ ବିଜ୍ଞାନ, ରକେଟ, ଉପଗ୍ରହ । ବେଦ, ଉପନିଷଦ, ଗୀତା, ଷଡ଼ଦର୍ଶନ, ରାମାୟଣ, ମହାଭାରତ, ଅଠର ପୁରାଣ ସାଙ୍ଗକୁ ଅଛି ଡାରଉଇନ୍, ଫ୍ରଏଡ଼, ମାର୍କସ ଆଉ ଆଇନଷ୍ଟାଇନ ।

ଏଠି ଯେପରି ବହୁ ଯୁଗର ଏକତ୍ର ସହାବସ୍ଥାନ । ପ୍ରସ୍ତରଯୁଗ, ତାମ୍ରଯୁଗ, ଲୌହଯୁଗ, ଆଉ ପ୍ଲାଷ୍ଟିକମ୍‌ଯୁଗ । ପ୍ରାଚୀନଯୁଗ ଅନ୍ଧକାର ଯୁଗ, ମଧ୍ୟଯୁଗ, ଆଧୁନିକ ଯୁଗ, ଅତ୍ୟାଧୁନିକ ଯୁଗ । ଏଠି ବହୁ ଆଙ୍ଗିକର, ବହୁପ୍ରକାର

ଅଭିବ୍ୟକ୍ତିର ସମକାଳୀନ ଭାବେ କ୍ରିୟାଶୀଳତା ବିଦ୍ୟମାନ । ବହୁ ଭାବନା ଚିନ୍ତା, ଅନୁଚିନ୍ତାର ପରୀକ୍ଷା ନିରୀକ୍ଷା ଚାଲିଛି । ଏଠି ଅଛି ବହୁ ଦିଗନ୍ତ । ସୁତରାଂ ବହୁ ଦ୍ୟୋତନା ।

ଏଇ ଭିନ୍ନତା ମଧ୍ୟରେ ଆମେ ଦେଖୁ ସମାଜର ବିଭିନ୍ନ ଅନୁଷ୍ଠାନଗୁଡ଼ିକ ମଧ୍ୟରେ, ସମାଜର ବିଭିନ୍ନ ସ୍ତରର ମଣିଷମାନଙ୍କ ଭିତରେ ସଂପର୍କ ଜାଲର ଏକ ଚକ୍ରବ୍ୟୂହ—ସାତରଙ୍ଗ ନୁହେଁ, ନବଗୁଞ୍ଜର ରୂପ । ନବଗୁଞ୍ଜର ନୁହେଁ, ପାଞ୍ଚମନ ଭିତରେ ପଚିଶ ପ୍ରକୃତି । ବହୁ ପ୍ରକାରର ଅନୁଷ୍ଠାନ । ସମ୍ପର୍କ ବି ବହୁ ପ୍ରକାରର । ଭୋଗ ଓ ଅଧିକାର ନେଇ ବହୁ ପ୍ରକାରର ସମ୍ପର୍କ ମଣିଷ ମଣିଷ ମଧ୍ୟରେ । ଏଠି ଦ୍ୟୋତନା ସରଳରୈଖିକ ନୁହେଁ ବା ଲୀଳାବତୀ ସୂତ୍ର ଅନୁସାରେ କଷାଯାଇ ପାରିବ ନାହିଁ ।

ଆଗରୁ ଆମେ ଦେଖିଛୁ ଭାରତୀୟ ବୌଦ୍ଧିକତା ବହୁଦିନଧରି ମୁଖ୍ୟତଃ ପୂର୍ବ ସୂତ୍ରମାନଙ୍କ ସ୍ମରଣ, ବିସ୍ତୃତ ଆଲୋଚନା, ବିଧିନିଷେଧ ଇତ୍ୟାଦି ଗୁଡ଼ିକର ସଙ୍କଳନ ଓ ସମୀକରଣ ମଧ୍ୟରେ ସୀମିତ ଥିଲା । ପ୍ରଫେସର ଚସ୍ତନର କହିଛନ୍ତି ଯେ ଯେଉଁ ସମାଜରେ ସମାଜର ପ୍ରକ୍ରିୟାକୁ ପ୍ରଭାବିତ କରିପାରିବା ଭଳି ଶକ୍ତି ଥାଇ ଏକ ବୁର୍ଜୋୟା ଶ୍ରେଣୀର ଅଭ୍ୟୁଦୟ ହୁଏ; ସେ 'ସମାଜ'କୁ ଆଧୁନିକ ବୋଲି କୁହାଯାଇପାରେ । ପୁଣି ଯେଉଁ ସମାଜରେ ଏହି ଆଧୁନିକୀକରଣ ପ୍ରଣାଳୀର ବିକାଶଧାରା ଉପର ସ୍ତରରୁ ତଳ ସ୍ତରକୁ ବିକାଶଲାଭ କରିଛି, ସେହି ସମାଜରେ ଏକ ସ୍ଥାୟୀ ମଧ୍ୟବିତ୍ତଶ୍ରେଣୀ ପରିବର୍ତ୍ତେ ଏବଂ ତାର କୃତ୍ରିମ ବିକଳ୍ପ ରୂପେ ଏକ ତଥାକଥିତ ବୁଦ୍ଧିଜୀବୀ ଶ୍ରେଣୀର ଉଦ୍ଭବ ହୋଇଥାଏ । ଭାରତୀୟ ବୁଦ୍ଧିଜୀବୀ ଶ୍ରେଣୀ ଏହି ଧରଣର ବୋଲି ସେ ମତ ପ୍ରକାଶ କରିଛନ୍ତି । କୌଣସି ଏକ ସମାଜରେ ମଧ୍ୟବିତ୍ତ ଶ୍ରେଣୀର ସୃଷ୍ଟି ଏକ ସ୍ୱାଭାବିକ ପ୍ରକ୍ରିୟା । ମନସ୍ତାତ୍ତ୍ୱିକ ଦୃଷ୍ଟିରୁ ଏହି ଶ୍ରେଣୀର ମାନସ ସତ୍ତାରେ ଏକ ଭାରସାମ୍ୟ ରହିଥାଏ । କିନ୍ତୁ ଅପର ପକ୍ଷରେ ଅପ୍ରାକୃତ ଭାବେ ସୃଷ୍ଟ "ବୁଦ୍ଧିଜୀବୀ" ଗୋଷ୍ଠୀ ମଧ୍ୟରେ ଏକ ଦ୍ୱୈତତା ପରିଦୃଷ୍ଟ ହୁଏ । ସେମାନେ କାହି ବିସାରେ ନୋଇଲି,

ନିଜ ଘରେ ବିଦେଶୀ । ଏହି ଶ୍ରେଣୀ ଏକ ସ୍ୱାଭାବିକ ପ୍ରକ୍ରିୟାର ପରିଣତି ବା ସ୍ମାରକ ନୁହେଁ । ଏକ ନୂତନ ବା ଭିନ୍ନ ସଂସ୍କୃତିର ସଙ୍ଘାତରେ ନିଜ ସଂସ୍କୃତି ବା ସମାଜର ଦୁରବସ୍ଥାର ଏକ ପ୍ରତୀକ । ସେମାନେ ଶକ୍ତିର ପ୍ରତୀକ ନୁହନ୍ତି, ଦୁର୍ବଳତାର ପ୍ରତୀକ ।।୮୭।। ନିଜର ପରମ୍ପରା ଓ ସଂସ୍କୃତିର ଧର୍ମୀୟ ଭିତ୍ତି ଉପରେ ସେମାନଙ୍କର ଉଦାରପନ୍ଥୀ ପାଶ୍ଚାତ୍ୟ ଶିକ୍ଷାର ପରିଣତି ଆତ୍ମପ୍ରକାଶ କରିଥିଲା ଏକ ଆଧ୍ୟାତ୍ମିକ ସଙ୍ଘର୍ଷ ରୂପରେ ।।୮୮।। କର୍ଣ୍ଣଓ୍ୱାଲିସ [୧୭୮୬-୧୯୩]ଙ୍କ ଶାସନ ସଂସ୍କାର ଫଳରେ ଓ ଇଷ୍ଟ ଇଣ୍ଡିଆ କମ୍ପାନୀର ବ୍ରିଟିଶ ସରକାରଙ୍କୁ ଶାସନ କ୍ଷମତା ହସ୍ତାନ୍ତର [୧୮୫୮] ମଧ୍ୟରେ ଏହି ଦ୍ୱୈତତା ଓ ବିଚ୍ଛିନ୍ନତା ଦ୍ରୁତତର ହୋଇ-ଯାଇଥିଲା ।।୮୯।। ଶିକ୍ଷା ପ୍ରଣାଳୀର ପର୍ଯ୍ୟାପ୍ତ ଓ ଯଥାଯଥ ସଂସ୍କାର ଅଭାବରୁ ଏହି ଦ୍ୱୈତତା ଓ ବିଚ୍ଛିନ୍ନତା ଏ ପର୍ଯ୍ୟନ୍ତ ବଳବତ୍ତର ରହିଛି ।

ସୁତରାଂ ଭାରତୀୟ ସମାଜର ଅବବୋଧର ଅବଧାରଣା ପାଇଁ ତା'ର ସ୍ୱରୂପ ନିର୍ଣ୍ଣୟ କରିବାପାଇଁ, ଭାରତୀୟ ଭିତ୍ତିଭୂମି ଓ ତାର ଐତିହାସିକ ବିବର୍ତ୍ତନର ପୃଷ୍ଠଭୂମିରେ ତାର ସାଂସ୍କୃତିକ, ସାମାଜିକ ଦ୍ୟୋତନାର ଭିନ୍ନତା ବା ବର୍ଣ୍ଣାଳୀର ଅନୁଶୀଳନ ବା ମୂଲ୍ୟାୟନ କରିବାକୁ ପଡ଼ିବ ।

---

।।୮୭।। ବାହାର ସମାଜର ମଧ୍ୟବର୍ତ୍ତୀ ଶ୍ରେଣୀପ୍ରତି ସେମାନଙ୍କର ଏକ ଘୃଣାଭାବ ଅଛି । କାରଣ ସେହି ଶ୍ରେଣୀ "Both their sire and their bane, their cynosure and their bugbear" - [A study of History-Vol II, Chap xxxi ପୃ ୨୦୭-୨୦୯]

।।୮୮।। Schism in the soul.

।।୮୯।। The Nabobs—a study of the Social life of the English in Eighteenth century India-by Spear J. J. P [London 1932, Milford PP 136, 137, 145, quoted in A study of History, Vol. II PP 184-185

ଯୁଦ୍ଧର ବୀଭତ୍ସିକା ସମ୍ବନ୍ଧରେ ବହୁ ବହୁ ଲେଖାଯାଇଛି । ପାଶ୍ଚାତ୍ୟ ସମାଜ ଦ'ଦ'ଟା ମହାଯୁଦ୍ଧରେ ଧ୍ୱସ୍ତ ବିଧ୍ୱସ୍ତ ଅତିଷ୍ଠ ହୋଇଯାଇଛି । ଏହାର ଅଭିଜ୍ଞତା ଏକ convulsion, trauma । ପୁରାଣ ଗ୍ରନ୍ଥକରେ ପ୍ରଳୟର ବର୍ଣ୍ଣନା ହୁଏତ ଏହି ଅଭିଜ୍ଞତା ସହ ଖାପ ଖାଇଯିବ । ଆମ ସମାଜରେ ବି ଯୁଦ୍ଧର ଅଭିଜ୍ଞତା ଆସିଥିଲା । ଦ୍ୱିତୀୟ ମହାଯୁଦ୍ଧରେ ଆମେ ଦେଖିଲୁ କଣ୍ଟ୍ରୋଲ ଓ କଳାପୋତେଇ । ଖାଦ୍ୟ କିରାସିନି ମିଳିଲା ନାହିଁ । ଜିନିଷପତ୍ର ଦର ବଢ଼ିଗଲା ଓ ଜିନିଷପତ୍ର ଗୁଡ଼ିକ ଦୁର୍ଲଭ ହୋଇଗଲା । ଆକାଶରେ ଉଡ଼ାଜାହାଜ ଆସିଲା ବାରମ୍ବାର । ଥରେ ଥରେ ଉଡ଼ାଜାହାଜ ଓହ୍ଲେଇ ବା ଖସିପଡ଼ି ତାକୁ ଦେଖିବାପାଇଁ ଯାତ୍ରା ବି ଲାଗିଯାଇଥିଲା । ବହୁତ ଗୁଜବ ଆଉ ଭୀତି ସଞ୍ଚାର । ବ୍ଲାକ୍ ଆଉଟ୍ ହୋଇଗଲା । ଷ୍ଟେସନରେ ଓ ସହରରେ । ଟ୍ରେଞ୍ଚ ଖୋଳାହେଲା । ସ୍କୁଲ କଲେଜ ଲଗାଏତ ଗୁଡ଼ାଏ ଜାଗାରେ "ବାଫଲ୍‌ଓ୍ୱାଲ୍" ତିଆରି ହେଲା ଓ ମନ୍ଦିରେ ମନ୍ଦିରେ ଏଠି ସେଠି ଯୁଦ୍ଧ ବିଜୟପାଇଁ ସମୂହ ପ୍ରାର୍ଥନା ବି କରାହେଲା । ସହରରୁ ଅନେକ ପିଲାକବିଲାଙ୍କୁ ନେଇ ଗାଁରେ ଛାଡ଼ି-ଦେଲେ । ସହରରେ ଅନେକ ଜାଗାରେ ସମରାଭ୍ୟାସ କରାଗଲା, ବେଳେବେଳେ ସାଇରେନ୍ ବି ବାଜିଲା । ଜିନିଷ ପତ୍ରର ଅଭାବ କଣ୍ଟ୍ରୋଲ, ପତ୍ର, ପତ୍ରକାର୍ଡ ଓ କଳାପୋତେଇ ସକାଶେ ସାମାଜିକ ଓ ଅର୍ଥନୈତିକ ଦୁର୍ନୀତି ଦେଖାଦେଲା—ଗୁପ୍ତ ନାଷ୍ଟି ଠକେଇ, କୃତ୍ରିମ ଅଭାବ ସୃଷ୍ଟି କରିବା, ଅପମିଶ୍ରଣ ଇତ୍ୟାଦି । ଗାଁରେ ଚଉକିଆ, ଦଫାଦାର ଓ ପ୍ରେସିଡ଼େଣ୍ଟଙ୍କ ପ୍ରତିପତ୍ତି ବଢ଼ିଗଲା । ଖାକି ରଙ୍ଗର ମିଲିଟାରି ଟ୍ରକ୍ ବେଳେବେଳେ ଦେଖାଦେଲା ସହର ଓ ଗାଁ ରାସ୍ତାରେ । ବେଳେବେଳେ ଏଇ ଟ୍ରକ ଗୁଡ଼ିକରେ ବୁହାହୋଇ ଯାଉଥିବା ସୈନ୍ୟମାନେ ଗାଁଲୋକ ସ୍ତ୍ରୀ ଭୁଆସୁଣୀଙ୍କ ଉପରେ ଜୁଲମ କରିବା କଥା ଶୁଣିବାକୁ ମିଳିଲା । ସହରରେ ଗଢ଼ାହେଲା ମିଲିଟାରି କାଣ୍ଟନମେଣ୍ଟ ଓ କାଣ୍ଟନମେଣ୍ଟ୍ ଷ୍ଟୋର୍‌ରେ ମିଳିଲା ସେତେବେଳେ ଦେଖିବାକୁ ମିଳୁ ନ ଥିବା କେତେକ ଭଲ ଭଲ ଜିନିଷ ।

ତାପରେ କାଶ୍ମୀର ଯୁଦ୍ଧ [୧୯୪୭], ଚୀନ ଯୁଦ୍ଧ [୧୯୬୨], ପାକିସ୍ଥାନ ଯୁଦ୍ଧ [୧୯୬୫], ବଙ୍ଗଳାଦେଶ ଯୁଦ୍ଧ [୧୯୭୩], ଧନକର ଦରମାଦାନ, ଗହଣାଦାନ, କଣ୍ଟ୍ରୋଲ, କଲାପୋଡେଇ, ଦରଦାମ ବୃଦ୍ଧି, ଜିନଷପତ୍ରର ଅଭାବ, ସାମାଜିକ ଓ ଅର୍ଥନୈତିକ ଦୁର୍ନୀତି ।

ମହାଯୁଦ୍ଧ ପୂର୍ବରୁ ଓ ପରେ ସ୍ୱାଧୀନତା ଆନ୍ଦୋଳନ ଓ ଶେଷକୁ ସ୍ୱାଧୀନତା । ଗୋଟେ ନୂତନ ଅଭିଜ୍ଞତା—ମୁକ୍ତିର, ଏକ ଦୀର୍ଘ ନିଃଶ୍ୱାସର । ଅସହଯୋଗ ଆନ୍ଦୋଳନ, ଲୁଣମରା ଆନ୍ଦୋଳନ, ହରିଜନ ଆନ୍ଦୋଳନ, ଖଦୀ ଆନ୍ଦୋଳନ, ଭାରତଛାଡ଼ ଆନ୍ଦୋଳନ, ହଳଦିଆ ଭୋଟବାକ୍ସ, ଖଦଡ଼ ଟୋପି, ସାମ୍ପ୍ରଦାୟିକ ଦଙ୍ଗା, ଶରଣାର୍ଥୀ ସମସ୍ୟା, ଦେଶ ବିଭାଜନ ଓ ଦେଶ ସ୍ୱାଧୀନତା । ସେଠୁ ଗଡ଼ଜାତ ମିଶ୍ରଣ, ଅନ୍ଧାରମୂଳକର ଅବସାନ, ନାଥୁରାମ ଗଡ଼୍‌ସେ, ନୂତନ ସଂବିଧାନ, ଭାଷାସୂତ୍ରରେ ପ୍ରଦେଶ ଗଠନ ପଞ୍ଚବାର୍ଷିକ ଯୋଜନା, ଗୋଷ୍ଠୀ ଉନ୍ନୟନ, ଗ୍ରାମପଞ୍ଚାୟତ, ଅଦାଲତପଞ୍ଚ, ନାଏବପଞ୍ଚ, ସରପଞ୍ଚ, ଭୂଦାନ ଆନ୍ଦୋଳନ, ବନ୍ଧବାଡ଼ ନିର୍ମାଣ, ରାସ୍ତା ନିର୍ମାଣ, କୋଠାବାଡ଼ ନିର୍ମାଣ, ପୋଲ ନିର୍ମାଣ...ନିର୍ମାଣର ଯୁଗ । ଜମିଦାରୀ, ମାଫି, ବାହେଲଦାର, ମକଦମୀ, ସରବରାକାରୀ ଉଚ୍ଛେଦ ସାଙ୍ଗକୁ ଚୋରେଣ୍ଡର କଣ୍ଟ୍ରାକ୍‌ଟର, କଳା ପଇସା । ନୋଟ୍‌ । ଭୋଟ୍‌ । ପାଞ୍ଚବର୍ଷିଆ ଯୋଜନା, ଏକବର୍ଷିଆ ଯୋଜନା, ଉନ୍ନତ ବିହନ, ପୋକମରା ଔଷଧ, ଧାଡ଼ିରୁଆ, ଜାପାନୀ, ପଦ୍ଧତି, ସମବାୟକରଣ, ଜମିଚକ, ମାଛଚାଷ ଇତ୍ୟାଦି ଇତ୍ୟାଦି । ପୁଣି ଶେଷକୁ ଦାରିଦ୍ର୍ୟର ସୀମାରେଖା, ସାମାଜିକ ନ୍ୟାୟ...... ।

ଏହା ସାଙ୍ଗକୁ ଓ ଏ ସବୁ ଭିତରେ ଅନୁଷ୍ଠାନ-ଅନୁଷ୍ଠାନ, ମଣିଷ-ମଣିଷ ଓ ମଣିଷ-ଅନୁଷ୍ଠାନ ସମ୍ପର୍କ ମଧ୍ୟରେ ସମନ୍ୱୟ ଓ ଅଭିଯୋଜନା ନେଇ ବିଭିନ୍ନ ପ୍ରକାରର କ୍ରିୟା ପ୍ରତିକ୍ରିୟା । ଶିଳ୍ପ ବିକାଶର ମୂଳଦୁଆ ପଡ଼ିଛି । ସୁତରାଂ ଏହାର କେତେକ ଅବଶ୍ୟମ୍ଭାବୀ ପରିଣତିର ଇଙ୍ଗିତ ବା ସୂଚନା ବି ଦେଖିବାକୁ ମିଳିପାରେ । ଏକ ଶିଳ୍ପ ଭିତ୍ତିକ ବ୍ୟବସ୍ଥାରେ

ଅର୍ଥନୈତିକ ଏକକ ଭାବେ ଠିଆ ହୋଇଥିବା ପରିବାରର କାର୍ଯ୍ୟ କ୍ରମେ ଲୁପ୍ତିକି ଯାଏ । ସାମାଜିକ ଅନୁଷ୍ଠାନଭାବେ "ପରିବାର" ଓ "ବ୍ୟକ୍ତିଗତ ସମ୍ପତ୍ତି" କ୍ରମେ ବିପର୍ଯ୍ୟସ୍ତ ହୋଇଯାଏ । ସମ୍ପତ୍ତି ଅନୁପାତରେ ବ୍ୟକ୍ତିର ସାମାଜିକ ପ୍ରତିପତ୍ତି ଅନେକ ଗୁଣ ବଢ଼ିଯାଏ, କିନ୍ତୁ ସାମାଜିକ ଦାୟିତ୍ୱ ଆନୁପାତିକ ଭାବରେ ବଢ଼େ ନାହିଁ । ସୁତରାଂ "ସାମାଜିକ ନ୍ୟାୟ" ଏକ ମୁଖ୍ୟ ପ୍ରଶ୍ନ ରୂପେ ଦଣ୍ଡାୟମାନ ହୁଏ । ଶିକ୍ଷାର ପ୍ରଭୂତ ପରିମାଣାତ୍ମକ ବିସ୍ତାର ଅନୁସାରେ ଗୁଣାତ୍ମକ ବିସ୍ତାର ସମାନୁପାତିକ ହୋଇପାରେ ନାହିଁ ତେଣୁ ଶିକ୍ଷା ଅନେକ ସମୟରେ ମୁଷ୍ଟିମେୟ ବ୍ୟକ୍ତି ବା କ୍ଷମତା କେନ୍ଦ୍ରରେ ଥିବା କେତେକ ବ୍ୟକ୍ତିବିଶେଷଙ୍କର ଏକ ପ୍ରାକ୍ଟିକ-ମୃଗୟାର ବିଳାସ ହୋଇଯିବାର ସମ୍ଭାବନା ଆସେ । ଜାତି-ଜାତି ମଧ୍ୟସ୍ଥ ବିଭେଦ ଓ ସମୟ ସମୟରେ ବିଜୁର ବିମର୍ଷ ହେତୁ ସାମାଜିକ ସମ୍ପର୍କରେ ବେଳେବେଳେ ଅସହନଶୀଳତା ଦେଖାଦିଏ । ଶ୍ରମ ବିଭାଜନର ପରିଣତି ସ୍ୱରୂପ ସମାଜରେ ଯେଉଁ ବିଶେଷଜ୍ଞମାନଙ୍କର ଆବିର୍ଭାବ ହୁଏ ତା ଭିତରେ ବେଳେବେଳେ ଦେଖିବାକୁ ମିଳେ କରୁଣାତ୍ମକ ଦୃଶ୍ୟ । Homo Sapiens, Homo Economicus ରେ ପରିବର୍ତ୍ତିତ ହେବାର ଦୃଶ୍ୟ । ଆଦର୍ଶ ଓ ମୂଲ୍ୟବୋଧର ଅଭାବରୁ ସମାଜରେ ବୟୋଜ୍ୟେଷ୍ଠ ଓ ପୁରୋଧାମାନଙ୍କ ଅନୁସରଣ ଓ ଅନୁକରଣ ପ୍ରକ୍ରିୟା ବାଧାପ୍ରାପ୍ତ ହୁଏ ଓ ଫଳରେ ଦେଖାଦିଏ "ଗଣମାନବ" [Mass-man]ର ଏକ ଛବି ॥୧୦॥ କୃତ୍ରିମ ଉପାୟରେ ସୃଷ୍ଟ ସହରି ମାନବ-ଯିଏ ଆଦିମ ମାନବ ପରି ବ୍ୟବହାର କରେ ॥୧୧॥ ସୃଜନଶୀଳତାର

॥୧୦॥ Mass Man—The revolt of the masses by Ortega Gasset.

॥୧୧॥ Homo Integer antiquae virtutis ପରିଣତ ହୋଇଯାଏ Homo vulgaris Northcliffi ବା Homo Democticus Cleonisରେ । A study of History, Vol. 1-ପୃ ୩୫୫

ଜଡ଼ତା ବା ଆତ୍ମ-ମନ୍ୟତା, ପୁରୁଣା ଅନୁଷ୍ଠାନଗୁଡ଼ିକ ମଧ୍ୟରେ ରକ୍ଷଣଶୀଳତା, ପୁରୁଣା ଆଙ୍ଗିକ ଓ ସାଧନଗୁଡ଼ିକର ଅପରିହାର୍ଯ୍ୟତା ଦୃଢ଼ତର ହୋଇ ଉଠେ ॥୯୬॥

ଏ ପରିସ୍ଥିତିରେ ତିନୋଟି ବିକଳ୍ପ ସମାଧାନର ସମ୍ଭାବନା ଆମେ ଦେଖିବାକୁ ପାଇପାରୁ । ସମାଧାନଗୁଡ଼ିକ ସମାଜର ଅନୁଷ୍ଠାନଗୁଡ଼ିକର ଗଠନରୂପ [ Structure ] ସହ ନୂତନ ପରିସ୍ଥିତି [ Force ]ର ଅଭିଯୋଜନାର ବିଭିନ୍ନ ବିକଳ୍ପ ସ୍ୱରୂପରେ ଆସିଥାଏ । ଯେଉଁଠି ଅଭି-ଯୋଜନା ସମନ୍ୱିତ ଓ ସୁଷମ ହୋଇଛି, ସେଠାରେ ବିକାଶର ପଥ ସୁଗମ ହୋଇଛି । ଯେଉଁଠି ଅଭିଯୋଜନାର ଧାରା ବିଳମ୍ବିତ ବା ବିଷମ ହୋଇଛି ସେଠାରେ ଦେଖାଦେଇଛି ଅସନ୍ତୋଷ, ବାଧା, ଆଉ ବିଦ୍ରୋହର ଭାବ । ପୁଣି ଯେଉଁଠି ଅଭିଯୋଜନାର ଧାରା ବ୍ୟର୍ଥତାରେ ପର୍ଯ୍ୟବସିତ ହୋଇଛି, ସେଠାରେ ଅନ୍ତଃସାରଶୂନ୍ୟତା, ନିରାଶାବାଦ, ପଳାୟନବାଦ ଆଉ ସନ୍ନ୍ୟାସ ॥୯୩॥

ସୁତରାଂ ଏଇ ପରିପ୍ରେକ୍ଷୀରେ ଆଧୁନିକ ଅବବୋଧର ଭାରତୀୟ ସଂଜ୍ଞା ନିରୂପଣ କରିବାକୁ ପଡ଼ିବ । ଏଠି ଆମର ପ୍ରାଚୀନ ପରମ୍ପରାର ଏକ ଅଦ୍ଭୁତ ଜଡ଼ତା ଓ ଆକର୍ଷଣ ରହିଛି । ବିକାଶଧାରା ଆସିଛି- ସରଳ ରେଖାରେ ନୁହେଁ, ଯୌଗିକ ଭାବରେ । ଏଠି ବହୁ "କାଳ"ର

---

॥୯୨॥ A study of History, Vol. I ପୃ ୩୩୭-୮, ୩୪୦, ୩୫୧-୨, ୩୫୫-୬, ୩୬୬, ୩୭୭ ରେ ନିର୍ଦ୍ଦେଶିତ ଭାବଧାରା ଅନୁସାରେ ଉପରୋକ୍ତ ଅନୁଶୀଳନ କରାଯାଇଛି ।

॥୯୩॥ A study of History-Vol. I ପୃ ୩୨୭

ଏକାଧିକ ସହାବସ୍ଥାନ, ବହୁ "ଯୁଗ"ର ଏକାଧିକ ସହାବସ୍ଥାନ, ବହୁ ପ୍ରକାର ଆଙ୍ଗିକ, ଅଭିକ୍ରିୟା, ପରୀକ୍ଷା, ନିରୀକ୍ଷା, ଗବେଷଣା, ଚିନ୍ତନର ଉତ୍କର୍ଷଣ । ଏଠି ସବୁ "ତତ୍ତ୍ୱ" ପାଇଁ ଯୁକ୍ତି ଓ ସମର୍ଥନ ମିଳିବ । ସବୁ "ତତ୍ତ୍ୱ"ପାଇଁ ଋଷି ମିଳିବେ ଓ ସବୁ 'ଋଷି'ଙ୍କ ପାଇଁ "ସୂକ୍ତ" ମିଳିବ । ଏଠି "ଦିଗନ୍ତ" ଅନେକ । ସୁତରାଂ ଦ୍ୟୋତନା ବି ଅନେକ । ତେଣୁ "ଅବବୋଧ" ବି ଅନେକ । ଏଠି ଅଛି ଏକ "ଅବବୋଧର ବର୍ଣ୍ଣାଳୀ" ।

ତେଣୁ ଭାରତୀୟ ସମାଜରେ ଆମେ ଦେଖିବାକୁ ପାଇବୁ ଏକ ଯୌଗିକ ଦ୍ୟୋତନା, ଆଉ ଏକ ଯୌଗିକ ଅବବୋଧ—ଏକ ଅବବୋଧର ବର୍ଣ୍ଣାଳୀ । ଏଠି ବିଭିନ୍ନ ସ୍ତରର ଦ୍ୟୋତନା ଓ ବିଭିନ୍ନ ସ୍ତରର ଅବବୋଧ ମଧ୍ୟରେ ପାରସ୍ପରିକ କ୍ରିୟା ପ୍ରତିକ୍ରିୟାଦ୍ୱାରା ଏବଂ ତା ସାଙ୍ଗକୁ ଏଇ ଅବବୋଧ ସଂକ୍ରାନ୍ତୀୟ ପାଶ୍ଚାତ୍ୟ ଜଗତରୁ ଆମଦାନୀ ପୋଥି ବାଇଗଣ ମିଶି, ଅବବୋଧ ସ୍ତରରେ, ଅବବୋଧରୁ ଉଦ୍‌ଭୂତ ଚେତନା ସ୍ତରରେ ଆଉ ଚିନ୍ତାସ୍ତରରେ ଆସୁଛି କ୍ଲାନ୍ତି, ଭ୍ରମ, ବିସ୍ମୟ, ଅପ୍ରତିଭତା ଆଉ ବିଶୃଙ୍ଖଳା । ଏଇ ଘନ କୁଜ୍‌ଝଟିକା ମଧ୍ୟରେ କେତେବେଳେ ଗଛ ଜଣାପଡ଼ୁଛି, ଅରଣ୍ୟ ହଜିଯାଉଛି । ପୁଣି କେତେବେଳେ ଅରଣ୍ୟ ଆଖିରେ ପଡ଼ୁଛି, ଅଥଚ ଗଛ ହଜି ଯାଉଛି । କେତେବେଳେ କାନ ଦେଖାଯାଉଛି, ସୁନା ଆଖିକୁ ଦିଶୁ ନାହିଁ । ପୁଣି କେତେବେଳେ ସୁନା ଦେଖାଯାଉଛି କିନ୍ତୁ କାନ ଆଖିରେ ପଡ଼ୁନାହିଁ । କେତେବେଳେ ତେଲ ଘଡ଼ିରେ ହାତ ରହୁଛି ତ କେତେବେଳେ ପୁଅ ମୁଣ୍ଡରେ ହାତ ରହୁଛି ।

ଅରଣ୍ୟ ଓ ବୃକ୍ଷ । କାନ ଓ ସୁନା । ପୁଅମୁଣ୍ଡ ଓ ତେଲଘଡ଼ି । ଏଇ ବିହ୍ୱଳତା ଉପୁଜୁଛି ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ ଦିଗନ୍ତପ୍ରତି ଲକ୍ଷ୍ୟ ରଖିବାରୁ । କିନ୍ତୁ କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ଦିଗନ୍ତ ଉପରୁ ଆଖି

ଫେରାଇ ସମୁଦାୟ ଦିଗନ୍ତ ଉପରକୁ ଓ ସବୁ ଦିଗନ୍ତ ଉପରକୁ ନଜର ଦେବାକୁ ପଡ଼ିବ । ଏକ "ସମତଳ"ର ଦୁଇଟି ଆୟାମ [Dimension] ଅଛି । ସେହିପରି ଏକ ଘନ ବସ୍ତୁର ତିନୋଟି ଆୟାମ ଅଛି । ଦୈର୍ଘ୍ୟ, ପ୍ରସ୍ଥ, ବେଧ । ପୃଥ୍ୱୀ [Space] କାଳର ଚାରୋଟି ଆୟାମ ଅଛି । ଚଳଚ୍ଚିତ୍ରର ପରଦା ଉପରେ ଦୁଇ ଆୟାମବିଶିଷ୍ଟ ଛବି ଦେଖୁଛୁ ଓ ସମୟ ସମୟରେ ତିନି ଆୟାମବିଶିଷ୍ଟ ଛବି ବି ଦେଖୁଛୁ । ଆଧୁନିକ ଭାରତୀୟ ଅବବୋଧକୁ ଭାରତୀୟ ପରମ୍ପରା ଓ ପରିବର୍ତ୍ତିତ ପ୍ରଣାଳୀର ପରିପ୍ରେକ୍ଷୀରେ, ଏକ ସୁଷମ ଓ ସମନ୍ୱିତ ପ୍ରଣାଳୀରେ; ଏକ ବହୁ ଆୟାମ-ବିଶିଷ୍ଟ ଅବବୋଧ ଭାବରେ ଦେଖିବାକୁ ପଡ଼ିବ ।

—:O:—

ପୁସ୍ତକରେ ମଣିଷର ଚେତନା ସମକ୍ଷରେ ଏକ ନୂତନ ଦିଗନ୍ତର ଉନ୍ମୋଚନ ବିଷୟ ଅବତାରଣା କରାଯାଇଛି । ନୂତନ ଦିଗନ୍ତରୁ ଆସିଲା ନୂତନ ମଡ଼େଲ୍ ! ନୂତନ ଅବବୋଧ । ନୂତନ ପରମ୍ପରା । ଆଉ ସଂସ୍କୃତିର ନୂତନ ରୂପ ।

ଏକ ଧାରଣା [Concept] ହିସାବରେ ଏହି "ଦିଗନ୍ତ" ଆଉ "ଅବବୋଧ"ର ସ୍ୱରୂପ ଓ ବିସ୍ତାର କଅଣ ସେ ସମ୍ବନ୍ଧରେ ପୁସ୍ତକରେ କେତେକ ମୌଳିକ ତଥ୍ୟ ଦେବାର ପ୍ରୟାସ କରାଯାଇଛି । ତେଣୁ ବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ଏହି ଦିଗନ୍ତର କ୍ରମ-ବିକାଶ ଧାରା ଅନୁସରଣ କରାଯାଇନାହିଁ । ସେହିପରି କ୍ରମ ବିକାଶ ଧାରାର ଉଜାଣି ପଥରେ ସପ୍ତଦଶ ଶତାବ୍ଦୀ ପୂର୍ବରୁ ଏହାର ପ୍ରାକ୍-ବିକାଶ ଅବସ୍ଥା ସମ୍ବନ୍ଧରେ ମଧ୍ୟ ଯଥେଷ୍ଟ ସୂଚନା ଦିଆଯାଇନାହିଁ । କିନ୍ତୁ ସଭ୍ୟତା ଓ ସମାଜର ବିକାଶ ସରଣୀରେ ଏହି ଦିଗନ୍ତର ଚେହେରା ସମ୍ବନ୍ଧରେ ମୋଟାମୋଟି ଏକ ଛବି ଅଙ୍କନ କରାଯାଇପାରେ । ସ୍ଥୂଳତଃ ତିନିଁରେ ନିମ୍ନଲିଖିତ କେତେକ ସ୍ତର ବା ପର୍ଯ୍ୟାୟ ପରିଲକ୍ଷିତ ହୁଏ ।

[କ] ଅଲୌକିକ କୌଶଳ ଅବଲମ୍ବନ ଦ୍ୱାରା ଅଦୃଶ୍ୟ ଓ ଅଲୌକିକ ଶକ୍ତି ଗୁଡ଼ିକୁ ପ୍ରଭାବିତ କରିବାର ଚେଷ୍ଟା । ଏହା ଐନ୍ଦ୍ରଜାଲିକ ଶକ୍ତି ।

[ଖ] ସ୍ୱାଭାବିକ ବା ପ୍ରାକୃତିକ ଉପାୟରେ ଅଲୌକିକ ଦୈବ ବା ଅଦୃଶ୍ୟ ଶକ୍ତିକୁ ପ୍ରଭାବିତ କରିବାର ଚେଷ୍ଟା । ଏହା ଧର୍ମୀୟ ଶକ୍ତି ବା ଅନୁଷ୍ଠାନ

[ଗ] ଧର୍ମୀୟ ଇନ୍ଦ୍ରଜାଲ ଫାନ୍ଦରୁ ମୁକ୍ତି । ଏକ ମୁକ୍ତ ପ୍ରାଣଶକ୍ତିର ବିକାଶ । ପୃଥିବୀ ଓ ପ୍ରକୃତି ପ୍ରତି ଏକ କୌତୁହଳ । ଏହା ଅଭ୍ୟୁଦୟ କାଳ ।

[ଘ] ଅପାର୍ଥିବ ବା ଆଧ୍ୟାତ୍ମିକ ନିୟମ ବଦଳରେ ପାର୍ଥିବ ଓ ଭୌତିକ ନିୟମର ଧାରଣା । ନିୟମ ଓ ଶୃଙ୍ଖଳାର ଧାରଣାକୁ ନିର୍ଦ୍ଦିଷ୍ଟ ଘଟଣା ପ୍ରତି ପ୍ରୟୋଗ । ପ୍ରକୃତି ବିରୁଦ୍ଧରେ ଯୁଦ୍ଧ ବା ଲଙ୍କା-କାଣ୍ଡର ଅବସାନ ଓ ପ୍ରକୃତି-ବିଜୟ ପର୍ବର ଅଭ୍ୟୁଦୟାରମ୍ଭ । ଏହା ଆଧୁନିକ ଯୁଗ ।

[ଙ] ଘଟଣାବଳୀ ପ୍ରତି ଶୃଙ୍ଖଳାର ଧାରଣା ପ୍ରୟୋଗର ପ୍ରବର୍ତ୍ତନ ପରେ ସମୁଦାୟ ଜୀବ ଜଗତର କ୍ରମ ବିକାଶ ଧାରାକୁ ଏକ ପାର୍ଥିବ ନିୟମ ଆକାରରେ ପରିକଳ୍ପନା । ଏହା ଅଭ୍ୟୁତ୍ଥାନ କଥା । ଡାରଉଇନ ବାଦ ।

[ଚ] ଜୀବର ବିକାଶର ପରିପ୍ରେକ୍ଷୀରେ ସ୍ୱକୀୟ ବିକାଶ ଧାରାର ଆବିଷ୍କାର ପରେ ବିବର୍ତ୍ତନର ଐତିହ୍ୟ ରୂପେ ମିଳିଥିବା "ମନ" ମଧ୍ୟସ୍ଥ ଧାରାଗୁଡ଼ିକ ସମ୍ବନ୍ଧରେ ନୂତନ ଦିଗନ୍ତର ଆବିଷ୍କାର । ଏହା ଫ୍ରଏଡ଼ଙ୍କ ତତ୍ତ୍ୱ ।

[ଛ] ନିଜର ବିକାଶ ଓ 'ମନ'ର ଧାରା ସମ୍ବନ୍ଧରେ ସଚେତନତା ସହ ମଣିଷ ସମକ୍ଷରେ ମଣିଷ-ମଣିଷ ସମ୍ପର୍କ ସମ୍ବନ୍ଧରେ ଏକ ନୂତନ ଦିଗନ୍ତର ଉନ୍ମୋଚନ । ଏହା ମାର୍କସ୍‌ଙ୍କ ତତ୍ତ୍ୱ ।

[ଜ] ପୃଥ୍ୱୀ ଓ କାଳର ଦୂରତା ସଙ୍କୁଚିତ ହୋଇଗଲା ପରେ ପୃଥ୍ୱୀ ଓ କାଳର ଅବିଚ୍ଛିନ୍ନତା ତତ୍ତ୍ୱ ମଧ୍ୟରେ ପୁଣି ଏକ ନୂତନ ଦିଗନ୍ତର ଆବିଷ୍କାର । ଏହା ସବୁ ଘଟଣାବଳୀକୁ ମିଶାଇ ଏକ ଜାଗତିକ ନିୟମ ସନ୍ଧାନର ପ୍ରଚେଷ୍ଟା; ଏହା ଆଇନଷ୍ଟାଇନଙ୍କ ତତ୍ତ୍ୱ ।

[ଝ] ଏ ସବୁ ମଧ୍ୟରେ, ବିଜ୍ଞାନର ବିପୁଳ ଅଗ୍ରଗତି ଓ ଜ୍ଞାନର ବିସ୍ତୃତ ବିସ୍ଫୋରଣ ମଧ୍ୟରେ, ରହିଛି ମଣିଷର ଅସମାହିତ ମୂଳ ସମସ୍ୟା—ସ୍ୱାଭାବିକ ଉପାୟରେ, ସ୍ୱାଭାବିକ ବା ପ୍ରାକୃତିକ ଶକ୍ତି ଗୁଡ଼ିକୁ ପ୍ରଭାବିତ କରିବାର ସମସ୍ୟା—ସ୍ୱାଭାବିକ ଉପାୟରେ ମଣିଷର ସାମାଜିକ,

ପାରମ୍ପରିକ ଶକ୍ତି ବା ପ୍ରତିଷ୍ଠା ଗୁଡ଼ିକୁ ପ୍ରଶ୍ନବିଦ୍ଧ ଓ ପରିବର୍ତ୍ତନ କରିବାର ସମସ୍ୟା । ସାଂପ୍ରତିକ କାଳରେ ତାହା ଏ ଅବଧି ମଣିଷକୁ ଘେନିଯାଇଛି ଅବସ୍ଥିତିବାଦ, ଖଣ୍ଡିତ ମାନସ ସତ୍ତା ଆଉ ଯୁଗ ଯନ୍ତ୍ରଣା ଆଡ଼କୁ ।

"ପରିଶିଷ୍ଟ"ରେ ଏହି ଦିଗନ୍ତରେ କେତେକ ପର୍ଯ୍ୟାୟ ସମ୍ପର୍କରେ ସଂକ୍ଷିପ୍ତ ସୂଚନା ଦିଆଯାଇଛି ।

## ଅଭ୍ୟୁଦୟ-କାଳ [Renaissance]

### ଏକ

ଆମେ ଦେଖିଲୁ-ସପ୍ତଦଶ ଶତାବ୍ଦୀରେ ଗୋଟିଏ ନୂତନ ଦିଗନ୍ତ ଖୋଲିଗଲା ମାନବ ସମକ୍ଷରେ । ଆସିଲା ଏକ ନୂତନ ମଡ଼େଲ୍ । ନୂତନ ମଡ଼େଲରୁ ଆସିଲା ନୂତନ ଅବବୋଧ, ନୂତନ ପରମ୍ପରା ଆଉ ସଂସ୍କୃତିର ନୂତନ ରୂପ ।

ଏଇ ନୂତନ ଅବବୋଧର ଉନ୍ମେଷ ଆଉ ଉତ୍ତରଣ ଆକସ୍ମିକ ନଥିଲା । ଗଳ ପୁନା କଳସ ଢାଳିବା ପରି ଏହା ସହସା ଆବିର୍ଭାବ ହୋଇନଥିଲା । ଏହା ଆସିଥିଲା ଏକ କ୍ରମବିକାଶ ଧାରାର ଅବଶ୍ୟମ୍ଭାବୀ ପରିଣତି ରୂପରେ; ସମସାମୟିକ ସାମାଜିକ ପରିସ୍ଥିତିର ସମୁଦ୍ର-ମନ୍ଥନ ଭିତରୁ । ଏହାର ପୃଷ୍ଠ ଭୂମିରେ ଥିଲା ପଞ୍ଚଦଶ ଶତାବ୍ଦୀରେ ଇଟାଲୀର ଅଭ୍ୟୁଦୟ ଆନ୍ଦୋଳନ Renaissance] ଏବଂ ଷୋଡ଼ଶ ଶତାବ୍ଦୀରେ ଜର୍ମାନୀର . ସଂସ୍କାର ଆନ୍ଦୋଳନ [ Reformation ] ଓ ସ୍ପେନର ପ୍ରତି ସଂସ୍କାର ଆନ୍ଦୋଳନ [Counter Reformation].

ଅଭ୍ୟୁଦୟକାଳ ଠିକ୍ ଏକ ସାଂସ୍କୃତିକ ବିପ୍ଲବର କାଳ ନୁହେଁ । ଏହାଥିଲା • ମଧ୍ୟଯୁଗ ଓ ଆଧୁନିକ ଯୁଗର ଏକ ସନ୍ଧିକାଳ । ଏକ ପ୍ରଦୋଷ ।

ଏହି କାଳରେ ଦେଖିବାକୁ ମିଳେ ପୁରାତନ ଓ ନୂତନ ଭାବଧାରା, ଧାର୍ମିକ ଓ ଧର୍ମବିରୋଧୀ ଭାବଧାରା, ଏବଂ କ୍ଷମତାକୈନ୍ଦ୍ରିକ ଓ ବ୍ୟକ୍ତିବାଦୀ ଭାବଧାରାର ସହାବସ୍ଥାନ । ଏହା ସଙ୍ଗେ ସଙ୍ଗେ ଇଟାଲି, ନେଦରଲାଣ୍ଡ, ସ୍ପେନ୍, ଫ୍ରାନ୍ସ ଓ ଇଂଲଣ୍ଡରେ ଜୀବନଯାପନ ପ୍ରଣାଳୀ ଓ ପ୍ରଚଳିତ ଭାବଧାରାର ରୂପ ଓ ଆକୃତିରେ କେତେକ ପରିବର୍ତ୍ତନ ॥୧॥ ଏହାକୁ ଇଉରୋପୀୟ ପ୍ରଜ୍ଞା ଓ ଇଚ୍ଛାଶକ୍ତିର ଏକ କ୍ରିୟାଶୀଳତା ରୂପରେ ମଧ୍ୟ ଗ୍ରହଣ କରାଯାଇପାରେ । ଏହି କ୍ରିୟାଶୀଳତାର ଆଭିମୁଖ୍ୟ ଥିଲା ଆତ୍ମ-ମୁକ୍ତି । ମଣିଷର ଅନ୍ୱେଷା ଓ ଇନ୍ଦ୍ରିୟାନୁଭୂତିର ଅଧିକାର ସାବ୍ୟସ୍ତ । ଏଇ ଦ୍ୟାବ୍ୟା ପୃଥିବୀକୁ ମଣିଷର ବସତି ଉପଯୋଗୀ ଭାବେ ଦେଖିବାର

---

॥ ୧ ॥ XX It is best to characterise the period of Renaissance not as a wholly distinct cultural epoch, but rather as a transition period between the medieval and modern ages in which old and new, religious and profane, authoritarian and individualistic principles and concepts coexisted side by side, while at the same time certain marked transformations and changes in ideas and ways of living took place in Italy, the Netherlands, Spain, France, Germany and England.

[Encylopaedia of the Social Sciences, Vols. 13-14, Editor-in-Chief Edwin R. A. Seligman, The Mac Millan Company, 1954 page-279, Article by B. Groethuysen].

ଦୃଷ୍ଟିଭଙ୍ଗୀର ପ୍ରବର୍ତ୍ତନ । ରାଷ୍ଟ୍ର ଓ ବ୍ୟକ୍ତିର କାର୍ଯ୍ୟ ନିୟନ୍ତ୍ରଣ ପାଇଁ ମଧ୍ୟ ଯୁଗୀୟ କାଠାରୁ ପୃଥକ କେତେକ ତତ୍ତ୍ୱର ଆବିଷ୍କାର ଉଦ୍ୟମ ॥୨॥

ମଧ୍ୟଯୁଗରେ ଆମେ ଦୁଇଟି ପୃଥିବୀ ଦେଖିବାକୁ ପାଇଲୁ । ଗୋଟିଏ ମର୍ତ୍ତ୍ୟ, ଆଉ ଗୋଟିଏ ସ୍ୱର୍ଗ । ଗୋଟିଏ ଭୌତିକ, ଆଉ ଗୋଟିଏ ଆଧିଭୌତିକ । ଏଇ ପୃଥିବୀ ଥିଲା । କିନ୍ତୁ ତା ସହ ଆଉ ଏକ ସମାନ୍ତରାଳ ଅଦୃଶ୍ୟ ପୃଥିବୀ ମଧ୍ୟ ରହିଥିଲା--ପରଜନ୍ମର ପୃଥିବୀ, ଭବିଷ୍ୟତର ପୃଥିବୀ । ଏଇ ଦ୍ୱିତୀୟ ପୃଥିବୀ ବା ଭୂ-ସ୍ୱର୍ଗ ଥିଲା ଲୋଭନୀୟ,ମହନୀୟ, ଗୁରୁତ୍ୱପୂର୍ଣ୍ଣ,ସବୁ କିଛି । ଏ ଜନ୍ମର, ଏ ଜଗତର ନିଷ୍ଠାଶୀଳତା, ଉଦ୍ୟମ ଆଉ ଆକାଙ୍କ୍ଷା, ଏ ପୃଥିବୀ ଉପରେ ନିବଦ୍ଧ ନଥିଲା । ଏ ଜନ୍ମପାଇଁ ଉଦ୍ଦିଷ୍ଟ ନ ଥିଲା । ସବୁଥିଲା ଯେପରି ଏକ କୃତ ବା ମାନସିକ ; ଉତ୍ସର୍ଗୀକୃତ, ଗୋବିନ୍ଦାୟ ସ୍ୱାହା । ମଣିଷ ଥିଲା । କିନ୍ତୁ ଏ ପୃଥିବୀ ଯେପରି ତାର ବସତି ନଥିଲା । ଏ ପୃଥିବୀ ସତେ ଯେମିତି ଥିଲା ଏକ ବନ୍ଦର, ବା ରେଳ ଜଙ୍କସନ୍ ବା ବସ୍‌ଷ୍ଟାଣ୍ଡ ବା ହୋଟେଲ ; ଏକ ଯାତ୍ରାର ମଧ୍ୟବର୍ତ୍ତୀ ଅବସ୍ଥା, ସାମୟିକ ବ୍ୟବସ୍ଥା ଏକ । ଏଇ ଦୁଇ ପୃଥିବୀ ମଧ୍ୟରେ, ମଣିଷର ସବୁ ଭୌତିକ, ଆଧିଭୌତିକ, ଦୈବିକ, ଆଧିଦୈବିକ, ଆକାଙ୍କ୍ଷା ଆଉ ପରିଣତିର ଏକ ପ୍ରକାରର ସୁଷମ ବଣ୍ଟନ ମଧ୍ୟ ହୋଇଯାଇଥିଲା ।

---

॥ ୨ ॥ X X Renaissance X X as implying a comprehensive movement of the European intellect and will toward self-emanciption, toward reassertion of the natural rights of the reason and the senses, toward the conquest of this planet as a place of human occupation and toward the formation of regulative theories both for States and individuals differing from those of medieval times.

[Encyclopaedia Brittannica, Vol. 19 page-123].

ପୃଥିବୀ-ବ୍ୟାପୀ ଏକ ସାମ୍ରାଜ୍ୟ [World Empire] ର ସ୍ୱପ୍ନ ଚତୁର୍ଦ୍ଦଶ ଶତାବ୍ଦୀରେ ଭାଙ୍ଗିଗଲା । ଧର୍ମ, ସଂସ୍କୃତି ଓ ରାଜନୀତି କ୍ଷେତ୍ରରେ ଯେଉଁ ଶୃଙ୍ଖଳା ଓ ବ୍ୟବସ୍ଥା ଥିଲା ତାହା ଏହି ଶତାବ୍ଦୀରେ ବହୁ ପରିମାଣରେ ବଦଳିଗଲା ଏବଂ ଏଇ ବଦଳିବା ପ୍ରକ୍ରିୟାର ପ୍ରଭାବ ଓ ଘାଣ୍ଟଚକଟ ପଞ୍ଚଦଶ ଶତାବ୍ଦୀ ପର୍ଯ୍ୟନ୍ତ ଲମ୍ବି ଯାଇଥିଲା ॥ ୩ ॥ ଏହା ଆଗରୁ ଗୀର୍ଜା (Church) ଅଖଣ୍ଡ କ୍ଷମତାର ଅଧିକାରୀ ଥିଲା । ଦ୍ୱାଦଶ ଶତାବ୍ଦୀରେ " ନର୍କର ପ୍ରେମିକା ବା ସ୍ୱର୍ଗ " ଏହି ଦୁଇଟି ମଧ୍ୟରୁ ଗୋଟିକୁ ବାଛିବାପାଇଁ ଧର୍ମସଭାର ଏକ କୌତୂହଳପ୍ରଦ ସିଦ୍ଧାନ୍ତ ଦେଖିବାକୁ ମିଳେ ॥ ୪ ॥ ଚତୁର୍ଦ୍ଦଶ ଶତାବ୍ଦୀର

---

॥ ୩ ॥ The 14th Century saw the failure of the grandiose conceptions of world empire and a reversion to more limited objectives. The degrees of order—political, religious and cultural-realised for a brief moment in the 13th century was soon overthrown and by the middle of the 14th century that long series of disturbances had already begun which were not to cease until well into the middle of the 15th.

[Larousse Encyclopaedia of Ancient and Medi-eval History-Forward by A. J. Toynbee, General Editor Marcel Dunan, English Advisory Editor-John Bowle, 1967, page-357].

॥ ୪ ॥ The censorial attitude of the Church in the twelth century is well shown in "Aucassin and Nicolete", when Aucassin, bidden to choose

ଶେଷବେଳକୁ ଓ୍ୱାଇକ୍ଲିଫ୍ [ଖ୍ରୀ. ଅ. ୧୩୨୦-୧୩୮୪]ଙ୍କୁ ଦଣ୍ଡଦେବା ଅଭିପ୍ରାୟରେ ଧର୍ମସଭା ତାଙ୍କ ସମାଧିରୁ ହାଡ଼ଖଣ୍ଡ ବାହାର କରାଅଣି ପୋଡ଼ି-ଦେଇଥିଲେ ।। * ।। ଏହାହିଁ ଥିଲା ଧର୍ମ ଅନୁଷ୍ଠାନ ଓ ଧର୍ମଯାଜକ ମାନଙ୍କ ଆଚରଣ । କିନ୍ତୁ ଏହି ଶତାବ୍ଦୀରେ ସ୍ୱେଚ୍ଛାଚାରର ଏହି ସୂର୍ଯ୍ୟ ଅସ୍ତମିତ ହୋଇଗଲା । ଗୀର୍ଜାର କ୍ଷମତା ସଙ୍କୁଚିତ ହୋଇଗଲା ପରେ ଏହାଦ୍ୱାରା ପ୍ରବର୍ତ୍ତିତ ନାନା ବାଧା ଓ ବିଧିବିଧାନର ବନ୍ଧନ ମଧ୍ୟ ଶିଥିଳ ହୋଇଗଲା ।

---

between his mistress and heaven, declares, he will go to hell. "Thither go the gold and the silver, and the vair and the grey, and thither too go harpers and ministrels and the kings of the world. With these will I go, so that I have Nicolete, my most sweet friend, with me".

[The Making of Literature, R. A. Scott-James, Secker and Warburg, London, 1967, page-98].

|| * || When the House of Lords condemned his itinerant preachers, the House of Commons refused to concur. No doubt trouble would have accumulated if he had lived longer, but when he died in 1384 he had not yet been formally condemned. He was buried at Lutterworth, where he died, and his bones were left in peace until the Council of Constance had then dug up and burnt.

[History of Western Philosophy, Bertrand Russell, Unwin University Books, 1961, page-474].

ଫଳରେ ମଣିଷ ପ୍ରଥମଥରପାଇଁ ସ୍ୱାଧୀନ ଭାବରେ ଚିନ୍ତା କରିବାର ସୁଯୋଗ ନେଲା, ପୁରୁଣାବାଟ ଛାଡ଼ି ନୂଆ ବାଟରେ ଯିବାର ପ୍ରୟାସକଲା ॥୬॥ ପୁରୁଣାଭୟ ଆଉ ଭୟଦେଖାଇ ପାରିଲାନାହିଁ । ଆସିଲା ଏକ ମୁକ୍ତ ପ୍ରବଣତାର ଉନ୍ମତ୍ତତା ବର୍ଟ୍ରାଣ୍ଡ ରସେଲଙ୍କ ଭାଷାରେ "The old terrors ceased to be terrifying and the new liberty of spirit was found intoxicating ॥ ୭ ॥ ଆସିଲା ମାନବ ବାଦ [Humanism]

ଏହି ପ୍ରୟାସ ମଧ୍ୟରେ ମଣିଷ ପ୍ରଥମ କରି "ନିଜକୁ ଜାଣିଲା" ଓ "ନିଜ ପାଖକୁ ଫେରିଆସିଲା" । ଏହାକୁ The return of the

---

॥ ୬ ॥ Moreover, when the Church suffered glaring abuses within its ranks, it lost much of its authority; men began to neglect its restraints, to impose new restraints, and dare things forbidden—the Puritans of the world seeking a new religion under which to restore the old severities, the adventures in life and art setting out to explore the world for more constructive activities. Petrarch and Boceaccio, John Ball and Wycliffe, Chaucer, Longland, Huss and finally Columbus, each in his different way testified to the right of the individual to feel, act, think and believe for himself-to pursue openly paths that had been forbidden.

[History of Western Philosophy—page 114]

॥ ୭ ॥ The making of Literature— page 475.

Prodigal son ଉପାଖ୍ୟାନ ସହ ତୁଳନା କରାଯାଇପାରେ । ମଣିଷର ଆବିଷ୍କାର ଓ ପୃଥିବୀର ଆବିଷ୍କାର—ଏହା ମାନବବାଦ [Humanism]ର ମୂଳକଥା ଓ ପେଟ୍ରାର୍କ [ ୧୩୦୪-୭୪ ] ଏହାର ପ୍ରବର୍ତ୍ତକ । ମଣିଷର ସମ୍ମାନ ଅଛି, ମର୍ଯ୍ୟାଦା ଅଛି । ତାର ଅନୁଭବ ଅଛି, ଇଚ୍ଛାଅଛି, ଚିନ୍ତାଶକ୍ତି ଅଛି, ନିଜସ୍ୱ ସତ୍ତା ଓ ପରିଚୟ ଅଛି । ପୃଥିବୀରେ ତାର ଜନ୍ମ । ଏଇ ପୃଥିବୀକୁ ବ୍ୟବହାର ଓ ଉପଭୋଗ କରିବାର ଅଧିକାର ତାର ଅଛି । କୌଣସି ଏକ ଅନିଶ୍ଚିତ, ଅଦୃଶ୍ୟ, କାଳ୍ପନିକ ଭବିଷ୍ୟତରେ ଆତ୍ମାର ମୁକ୍ତି ମିଳିବ, ମଣିଷକୁ ମୁକ୍ତି ମିଳିବ, ଏଭଳି ଭାବଧାରା ମଣିଷ ପକ୍ଷରେ ଗ୍ରହଣୀୟ ନୁହେଁ । ମଣିଷ ଓ ପ୍ରକୃତି ଉଭୟ ଶ୍ରେୟ ଓ ପ୍ରେୟ । ଅତୀତର କୀର୍ତ୍ତିଗୁଡ଼ିକ ଏହାର ସାକ୍ଷୀ । ଏ ପୃଥିବୀରେ ମଣିଷର ସ୍ଥିତିକୁ ବୁଝିବା ବା ବୁଝାଇ ଦେବାପାଇଁ ଭଗବାନଙ୍କ ମଧ୍ୟସ୍ଥତା ବା କୌଣସି ନିର୍ଦ୍ଦିଷ୍ଟ ଧାର୍ମିକ ଭାବଧାରାର ସାହାଯ୍ୟ ଲୋଡ଼ାନାହିଁ । ଦୂର କଥା ନୁହେଁ, ଦୂର ପୃଥିବୀ କଥା ନୁହେଁ, ପାଖକଥା, ଏଇ ପୃଥିବୀର କଥା, ପୃଥିବୀର ମଣିଷର କଥା, ପାପପୁଣ୍ୟର ବାହାର ଗୁଡ଼ି ମଣିଷ ଜୀବନର ଅଭିଜ୍ଞତାର ପ୍ରକାଶ, ତାର ଜୀବନର ଅଭିଜ୍ଞତାର ଚିତ୍ରଣ, ତାର ସାଂପ୍ରତିକ ଜୀବନର କ୍ଲେଶ, ବେଦନା, ଆନନ୍ଦ, ପ୍ରେମ, ପ୍ରବଞ୍ଚନା ପ୍ରଭୃତି ବିଭିନ୍ନ ଭାବ, ବିଭାବ, ଅନୁଭାବ ହିଁ ମୁଖ୍ୟ । ଏଇ ସାଂପ୍ରତିକ ଜୀବନହିଁ ମୁଖ୍ୟ । ଅନ୍ୟ କୌଣସି ଜୀବନ ନୁହେଁ । ପୁଣି ଏଇ ସାଂପ୍ରତିକ ଜୀବନର ଅଭିଜ୍ଞତାର କେତେ ବୈଚିତ୍ର୍ୟ, କେତେ ଭିନ୍ନତା !! ଏ ବିଭିନ୍ନତା ଆଉ ବୈଚିତ୍ର୍ୟର ପରିପ୍ରକାଶପାଇଁ ଧର୍ମ-ତତ୍ତ୍ୱର ପ୍ରଲେପ ଦରକାର ନାହିଁ । ଆଧିଭୌତିକ ଆଡ଼େଣୀ ତରାସ ତତ୍ତ୍ୱର ଦରକାର ନାହିଁ । ଏଇ ବୈଚିତ୍ର ପୂର୍ଣ୍ଣ ବହୁ ସମ୍ଭାବନା ଯୁକ୍ତ ମଣିଷର ପ୍ରକୃତିକୁ ଚେଷ୍ଟା ଆଉ ବଦଳାଇବା ବି ଦରକାର ନାହିଁ । କାରଣ ମଣିଷ ଏଇ ପୃଥିବୀର ପରିସୀମାଦ୍ୱାରା ସୀମିତ । ସେ ନିଜକୁ ଅତିକ୍ରମ କରିପାରିବନାହିଁ । ଆଗରୁ ବହୁ ଚର୍ଚ୍ଚିତ, ବହୁ ଆକାଂକ୍ଷିତ ଭିନ୍ନ ପୃଥିବୀକୁ ଏଇ ପୃଥିବୀରେ ହିଁ ଖୋଜିବାକୁ ପଡ଼ିବ

ମଣିଷର ନିଜର ଆକାଂକ୍ଷା ଓ ଉଦ୍ୟମ କରିଆରେ । ତେଣୁ ଅକାଂକ୍ଷା ଆଉ ଉଦ୍ୟମହିଁ ମଣିଷ ଜୀବନର ମୁଖ୍ୟ ସୁର ।

ମଣିଷର ସ୍ୱକୀୟ ଉଦ୍ୟମ ଆଉ କ୍ରିୟାଶୀଳତା ହିଁ ମୂଲ୍ୟ । ଏହାର ମୂଲ୍ୟ ଅଛି । ମର୍ଯ୍ୟାଦା ଅଛି । ମଣିଷର ପ୍ରଜ୍ଞା ତାକୁ ଆଣିଦେବ ପ୍ରକୃତି ଉପରେ ଅଧିକାର ଆଉ କ୍ଷମତା । କେବଳ ନିଛକ ମଧ୍ୟଯୁଗୀୟ ମନନ [Contemplation] ନୁହେଁ, ତା ସହିତ ଉଦ୍ୟମ ଆଉ କ୍ରିୟାଶୀଳତା ---ଏହାର ସାହାଯ୍ୟରେ ଅଜୀବ ପ୍ରକୃତି ଉପରେ ଆଧିପତ୍ୟ, ପରିସ୍ଥିତି ଉପରେ କ୍ଷମତା ବିସ୍ତାର ।

ସୁତରାଂ ଅତୀତପ୍ରତି ସିଂହାବଲୋକନ । ପୁରାତନ ସାହିତ୍ୟ, ସଂସ୍କୃତି, ଦର୍ଶନର କ୍ଷୀର ସମୁଦ୍ର ମନ୍ଥନକରି-ଅମୃତ ଆଉ ମୋହନର ଅନୁସନ୍ଧାନ । ସୁତରାଂ ସବୁ ସୁପ୍ତ ଆଉ ସମ୍ଭାବ୍ୟ ସମ୍ଭାବନା ପ୍ରତି କୌତୁହଳ ॥୮॥

ପୁରୁଣା ଭସ୍ମ ଆଉ ଭସ୍ମ ହୋଇ ରହିଲନାହିଁ । ତା ଜାଗାରେ ଆସିଲା କୌତୁହଳ । ଏଇ କୌତୁହଳ ସହିତ କଚ୍ଛିଟା ଅନିଶ୍ଚିତତା, ସତର୍କତା, ଦ୍ୱିଧା ଆଉ ବିଚାର ବିମର୍ଷତା ମଧ୍ୟ ମିଶି ଯାଇଥିଲା । କୌତୁହଳ ଆସିଥିଲା ଏକ ପ୍ରବଣତାର ପ୍ରକାଶ ରୂପେ । ହୃଦୟର ପ୍ରବଣତା । ପୁରୁଣା 'ବାରଣ' ଗୁଡ଼ିକ ମଧ୍ୟରୁ ବହୁତ ଗୁଡ଼ିଏ ପୁଣି ପୁନଃଜୀବନ ଲାଭକଲା ॥୯॥ ଏବଂ ଧର୍ମ ଭାବନାକୁ ଏକ ପ୍ରକାରର ବିଭ୍ରାନ୍ତିକର ପରିସ୍ଥିତିରେ ପକାଇଦେଲା । ଅପର ପକ୍ଷରେ

---

॥ ୮ ॥ The proper study of mankind is man.
Cyriac of Ancona declared :—

"I go to awake the dead."

॥ ୯ ॥ Religious minds were bewildered. Among the more cultured, many turned towards feeling the impulses of the heart; theology ceased to be

ଅନେକ ଗୁଡ଼ିଏ "ବାରଣ" ଏଇ ନୂତନ କୌତୁହଳ, ସତର୍କତା ଓ ଦ୍ୱିଧାର ଏକ ନିର୍ମମ ଶିକାର ହୋଇପଡ଼ିଲ । ଏଇ ଶିକାର ମଧ୍ୟରୁ ଡାହାଣୀ-ଶିକାର [Witch hunting] ଦ୍ୱିତୀୟ ଶିକାର ଥିଲା । ୧୪୮୯ ମସିହାରେ ଜାକବ ସ୍ପ୍ରେଙ୍ଗର ଓ ହେନ୍‌ରିଚ୍ କ୍ରେମର "ଉଇଚ ହାମର" [Witch Hammer-Malleus maleficarum] ଶୀର୍ଷକ ଏକ ପୁସ୍ତକ ପ୍ରକାଶ କଲେ । ଏଇ ପୁସ୍ତକ ଯାଦୁବିଦ୍ୟା । [Witch craft] ପ୍ରକରଣ, ଯାଦୁକରୀ ବା ଡାହାଣୀମାନଙ୍କୁ ଚିହ୍ନଟ କରିବା, ଶାରୀରିକ କଷ୍ଟ ଦେଇ ସେମାନଙ୍କୁ ଜେରା କରିବାର ପ୍ରଣାଳୀ ଓ ଦଣ୍ଡଦେବା ସମ୍ବନ୍ଧରେ ଏକ ବିଶଦ ଗ୍ରନ୍ଥ । ଏହି ପୁସ୍ତକ ପୋପ୍, ରୋମର ସମ୍ରାଟ ଓ କଲୋନ୍ ବିଶ୍ୱବିଦ୍ୟାଳୟର ଧର୍ମ-ତତ୍ତ୍ୱ ବିଭାଗଦ୍ୱାରା ଅନୁମୋଦିତ ହୋଇଥିଲା । ଏହି ପୁସ୍ତକ ସବୁ ପ୍ରକାରର "ବାରଣ" [Heresy]କୁ ଯାଦୁକରୀବିଦ୍ୟା ବୋଲି ଅଭିହିତ କରିଥିଲା । ପରବର୍ତ୍ତୀ କାଳରେ ଏଇଥିରୁ

---

speculative and became mystical; X X X The popular preachers had immense success with the people, by methods very near to charlatonry, incited extreme unrest. Groups of flagellants sprang up, superstitions were wide spread, and these excessive and theatrical practices became a real perversion of religious feeling. Lastly in this general ferment of ideas, heresies were revived, almost all of which were hostile to the priesthood, and called for a return to the scriptures.

[Larousse Encyclopaedia of Ancient and medieval History- page 136]

"ମାନସିକ ବିକୃତି" [mental disorder] ଓ ତାର ଚିକିତ୍ସା ପ୍ରଣାଳୀର ବିକାଶ ଲାଭ କଲା ॥୧୦॥

ଚତୁର୍ଦ୍ଦଶ-ପଞ୍ଚଦଶ ଶତାବ୍ଦୀରେ ମଣିଷର ଜୀବନ ଓ ଚିନ୍ତାଧାରାକୁ ପ୍ରଭାବିତ ଓ ପରିବର୍ତ୍ତିତ କରିପାରୁଥିବା ଅନେକ ଉପାଦାନ ଓ ଉପକରଣ ମିଳିଥିଲା । କାଗଜର ଉଦ୍ଭାବନ [ ୧୪ଶ ଶତାବ୍ଦୀ ], ତାର ପ୍ରସ୍ତୁତି ଓ ବ୍ୟବହାର । ଖ୍ରୀ. ଅ. ୧୪୫୦ରେ ଛାପାଖାନାର ଉଦ୍ଭାବନ । ବାରୁଦର ଆବିଷ୍କାର । ନାବିକ କମ୍ପାସ ଆବିଷ୍କାର । ୧୪୯୩ ମସିହାରେ

---

॥ ୧୦ ॥ The great changes in the social structure at the time of Renaissance created a general feeling of uncertainty and insecurity. Insecure men, uncertain of the future, frustrated by change, stand ready to exorcise the threat of evil by an uncritical distribution of blame and punishment. Than, as now, they were ready to go witch hunting because they were afraid, and in the fifteenth century the church did it for them. In 1489 Jacub sprenger and Heinrich kraemer, two Dominican brothers, taking advantage of the recent invention of the printing press, published the Malleus maleficarum, a title which perhaps can be best translated as the witch Hammer, since the book was designed to be a tool for hammering at the witches. The Malleus maleficarum is a cruel encyclopaedia on witchcraft, the

କନ୍ଷ୍ଟାଣ୍ଟିନୋପଲ୍ର ପତନ ଓ ସେହିବର୍ଷ ଇଂଲଣ୍ଡ ଓ ଫ୍ରାନ୍ସ ମଧ୍ୟରେ ଶହେ ବର୍ଷିଆ ଯୁଦ୍ଧ [୧୩୩୭-୧୪୫୩]ର ଅବସାନ । ଜାତୀୟବାଦ [Nationalism]ର ଅଭ୍ୟୁଦୟ । ଆଞ୍ଚଳିକ ଭାଷା ଗୁଡ଼ିକର

---

detection of witches and the procedures for examining them by torture and for sentencing them. the treatise had the approval of the Pope, of the king of Rome and, after some reluctant resistance, of the Faculty of theology at the University of cologne. It identified witchcraft with heresy and for us it identifies witchcraft with the mental disorders, many of whose symptoms it describes with care. For three hundred years in nineteen editions this malevolent compendium remained the authority and guide of the Inquisition as it sought out heresy and demonical possession among the people.

xxx. Zilboorg has suggested that the first psychiatric revolution against the doctrine of demonology began in a minor fashion contemporaneously with the intensification of witch hunting by the Inquisition. In this context, the names of Juan Luis vives [1492-1540] and Johann weyer [1515-1588] stand out.

ବିକାଶ ଇତ୍ୟାଦି ଇତ୍ୟାଦି । ଏହା ସାଙ୍ଗକୁ କଳା, ସ୍ଥାପତ୍ୟ, ଭାସ୍କର୍ଯ୍ୟ, ସାହିତ୍ୟ, ସମାଲୋଚନା, ବିଜ୍ଞାନ, ଓ ଦର୍ଶନ କ୍ଷେତ୍ରରେ ବହୁ ରଥୀମାନଙ୍କର ଆବିର୍ଭାବ ॥୧୧॥

---

[ A History of Experimental Psychology— Edwin G. Boring, The Times of India Press, Bombay, 2nd Editicn, 1969, Pages 694-695 ]

॥ ୧୧ ॥ Plastic Arts : Raphael, Da Vinci, Titan, Correggio.

Sculpture Donatello, Michel angelo, Sansovino.

Architecture Bramante, Omodeo, Lombardi.

Science : Da Vinci, Toscanelli, Daporta, Alberti, Titian.

Literature : Cervantes, Petrarch,
Boccaccio, Dante, Villani,
[1325-1408] [1265-1321]
Chaucer, John Gower
[1340-1400] [1325—1408]

Criticism : Lorenzo Valla.

Machiavelli Erasmus Thomas More
[1467-1527] [1466-1536] [1478-1535]

Education Verone, Filelfo, Aurispa, Poggio etc.

ଏ ସବୁର ସାମଗ୍ରିକ ପ୍ରଭାବ ଦେଖାଗଲା ଏକ ନୂତନ ଦୃଷ୍ଟିଭଙ୍ଗୀ ରୂପରେ ।

ମଧ୍ୟଯୁଗରେ "ବିଶ୍ୱାସ"ରେ "ଈଶ୍ୱର" ମିଳୁଥିଲେ ଏବଂ ତର୍କରେ ସେ ବିନ୍ଦୁ ଦୂରକୁ ଚାଲି ଯାଉଥିଲେ । ଏହି ବିଶ୍ୱାସ [faith] ପଛରେ ଥିଲା ଗଣି ଗଣି ସ୍ୱୀକୃତ ଅନ୍ଧବିଶ୍ୱାସ । କିନ୍ତୁ ଅଭ୍ୟୁଦୟ ଯୁଗରେ ବିଶ୍ୱାସ ବଦଳରେ ଆସିଲା ସରଳ-ବିଶ୍ୱାସ [Credulity] । ପୃଥିବୀ ଏକ ଅସରନ୍ତି ସମ୍ଭାବନାର ଗନ୍ତାଘର । ବିଭିନ୍ନ ବସ୍ତୁର ସମାହାର । ଏଠି ସବୁକିଛି ସମ୍ଭବ । ଯାହା କିଛି ଅନୁଭାବନାରେ ଆସିପାରେ, ସେ ସବୁ ସମ୍ଭବ । ସୁତରାଂ କୌତୂହଳ । ସୁତରାଂ ଏକ ଆଶ୍ଚର୍ଯ୍ୟ ଭାବଭରା ଦୃଷ୍ଟି । ଯେପରି ଥିଲା "ଟେମ୍ପେଷ୍ଟ"ରେ "ମିରାଣ୍ଡା"ର ଦୃଷ୍ଟି । ଏହା ସାଙ୍ଗକୁ ମଧ୍ୟଯୁଗୀୟ "ବିଭୂତି" ଭୟରେ ପରିଣତ ହୋଇଗଲା । ମହିମା ଓ ଅନୁକମ୍ପା [Grace] ଆଉ ରହିଲା ନାହିଁ । ତା ବଦଳରେ ଆସିଲା ଘଟଣାବଳୀର ଅସରନ୍ତି ସମାହାର ଆଉ ସମ୍ଭାବନାର ଧାରଣା । ଏ ସମ୍ଭାବନା ସୀମାହୀନ । ତେଣୁ ବାସ୍ତବ ଓ କଳ୍ପନା ମଧ୍ୟରେ ସୀମାରେଖା ବି ଅସ୍ପଷ୍ଟ । ପୃଥିବୀରେ ଭରି ରହିଛି ଏକ ପ୍ରକାରର "ଆକସ୍ମିକତା", ଯାହା ଫିଗୁଣରକୁ ହୁଏତ ହସ୍ତରେ ଧରନାହିଁ କିନ୍ତୁ ମୃଗୀକୁ ନଚେଇ ପାରୁଛି । ଘଟଣାବଳୀ ପଛରେ ନେମିତ୍ତ କୌଣସି ଅଜ୍ଞାତ ବା ଅଦୃଶ୍ୟ ଶକ୍ତିର ହାତ ବା କ୍ରିୟାଶୀଳତା ରହିଛି । ଆଗରୁ ଥିଲେ ଋଷି [Saint] ଆଉ ଥିଲା ଆପ୍ତ ବଚନ । ବର୍ତ୍ତମାନ ଆସିଲେ ଦାର୍ଶନିକ [Philosopher] ଆଉ ଆସିଲା ମନନ ।

କଳା କ୍ଷେତ୍ରରେ ଅଭ୍ୟୁଦୟ ଯୁଗର ମୁକ୍ତ ପ୍ରବଣତାର ପୂର୍ଣ୍ଣ ପରିପ୍ରକାଶ ଦେଖିବାକୁ ମିଳିଥିଲା । ପୃଥିବୀ ସହ ବୁଝାମଣାପାଇଁ, ପୃଥିବୀକୁ ଅବଧାରଣା କରିବାପାଇଁ କଳା ଏକ ଉପଯୁକ୍ତ ମାଧ୍ୟମ ବୋଲି ବିବେଚିତ ହୋଇଥିଲା । ଏ ଯୁଗର କଳା ଅନୁଭାବନା ଆଉ ଚିନ୍ତାର ଏକ

ମୁକ୍ତ ବନ୍ଧନହୀନ ସମ୍ଭାବନା । ଗୁଳାବାଟ ନାହିଁକି ଧରାବନ୍ଧା ନିୟମ ନାହିଁ । ଏକ ଦୁର୍ନିବାର ଉଚ୍ଛ୍ୱାସ, ଏକ ମୁକ୍ତ ଇନ୍ଦ୍ରିୟ ପରାୟଣତା, ଏକ ନାଟକୀୟତା ଆଉ ଉତ୍କଟତା । କିନ୍ତୁ ଛନ୍ଦେ ଛନ୍ଦେ ମାନବିକତାଦ୍ୱାରା ପ୍ରଣୋଦିତ । ସୌନ୍ଦର୍ଯ୍ୟ ପ୍ରବଣତା ଆଉ ସମନ୍ୱୟର ଏକ ବଳିଷ୍ଠ ପ୍ରବାହ । ଏକ ସ୍ୱତସ୍ଫୂର୍ତ୍ତିତା । ଅନୁକମ୍ପା ନାହିଁ । ଅନୁଶୋଚନା ନାହିଁ । ଜ୍ଞାନ ଗରିମାର ବଡ଼େଇ ନାହିଁ । ପୃଥିବୀର ଓ ମଣିଷର ସୁନ୍ଦର ପଣିଆର ଆଉ ଭଲପଣିଆର ଏକ ମୂର୍ତ୍ତିମନ୍ତ ବିଗ୍ରହ ॥୧୨॥

ଅଭ୍ୟୁଦୟ ଯୁଗର ପଦାଙ୍କରେ ସ୍ପଷ୍ଟ ଦିଗ ନିର୍ଦ୍ଦେଶ ଥିଲା ଆଧୁନିକ ଯୁଗ ଆଡ଼କୁ । ଏହା "କାହିଁକି"ର ବଜ୍ରର ଧାର ଭାଙ୍ଗିଦେଲା । ଅପାର୍ଥିବ ଓ ଆଧ୍ୟାତ୍ମିକ ନିୟମର ଧାରଣା ନଷ୍ଟ କରିଦେଲା । କିନ୍ତୁ ତାର ବିକଳ୍ପ ବ୍ୟବସ୍ଥା ଆସିବାପାଇଁ କ୍ଷେତ୍ର ପ୍ରସ୍ତୁତ ହୋଇଯାଇଥିଲେହେଁ ଉପଯୁକ୍ତ ମାନସିକ ପ୍ରସ୍ତୁତି ଆସି ନ ଥିଲା । ପ୍ରାଚୀନ ଯୁଗରେ ଏହି ଜାଗତିକ ନିୟମର ଧାରଣା ଥିଲା । କିନ୍ତୁ ନିର୍ଦ୍ଦିଷ୍ଟ ଘଟଣା ଗୁଡ଼ିକ ପ୍ରତି ଏହି ନିୟମର

---

॥ ୧୨ ॥ Its religion is joyous, sensuous, dramatic terrible but in each and all of its many-sided manifestations strictly human. Its touch on classical mythology is original, rarely initiative or pedantic. The art of the Renaissance was an apocalypse of the beauty of the world and man in un-affected spontaneity without side thoughts for piety or erudition, inspired by pure delight in loveliness and harmony for their own sakes.
[ Encyclopaedia Brittanica—Page 127 ]

ପ୍ରୟୋଗର ଧାରଣା ଆସିପାରିନଥିଲା । କଳା କ୍ଷେତ୍ରରେ ଏଇ ନୂତନ ପ୍ରୟୋଗପାଇଁ କିଛିଟା ସଙ୍କେତ ମିଳିଥିଲା । ଘଟଣାଗୁଡ଼ିକୁ ସେମାନଙ୍କର ପାରସ୍ପରିକ ସମ୍ପର୍କ ଜରିଆରେ ବୁଝାଇବାପାଇଁ ଉଦ୍ୟମ ଏଥିରେ ଦେଖିବାକୁ ମିଳେ । କିନ୍ତୁ ଅଭ୍ୟୁଦୟ ଯୁଗରେ ପ୍ରାଚୀନ ନିୟମ ଓ ଶୃଙ୍ଖଳାର ଧାରଣା ଏବଂ ନିର୍ଦ୍ଦିଷ୍ଟ ଘଟଣା ପ୍ରତି ସେ ଗୁଡ଼ିକର ପ୍ରୟୋଗ-ଏହି ଦୁଇଟି ଦିଗର ସମନ୍ୱୟ ସମ୍ଭବ ହୋଇନାହିଁ ॥୧୩॥

ସପ୍ତଦଶ ଶତାବ୍ଦୀରେ ଆମେ ଦେଖିଲୁ ଉପରୋକ୍ତ ଦୁଇ ଦିଗର ସମନ୍ୱୟରେ ସ୍ଫୁରଣ ଆଉ ଉତ୍ତରଣ । ସରଳ ବିଶ୍ୱାସ "ଯୁକ୍ତି"ରେ ପରିଣତ ହେଲା । "ଆକସ୍ମିକତା" "ନିୟମ" ବା "କାର୍ଯ୍ୟ-କାରଣ"ରେ ପରିଣତ ହୋଇଗଲା । "ଦାର୍ଶନିକ" ଆତ୍ମପ୍ରକାଶ କଲେ "ବୈଜ୍ଞାନିକ;" ରୂପରେ ।

---

॥ ୧୩ ॥ (a) The ancient philosophers indeed subscribed to the conception of a universal order, but it was the possibility of applying this idea of a general orderliness to individual phenomena which constituted modern scientific thought. The preparatory work of the Renaissance in the direction of explaining concrete individual phenomena in their general relationships was brought about by the artistic perception of the concrete and its descriptive presentation. Nevertheless, the Renaissance was unable to harmonise these two ideas : the traditional carried over from the antiquity, of a general order; and the new sense of the individual and the concrete [Encyclopadia of Social Science-page 283].

# ଅଭ୍ୟୁଥାନ-କଥା  ଦାରଉଇନ ବାଦ

## ଦୁଇ

ଆଉ ଏକ ସଂପୂର୍ଣ୍ଣ ନୂତନ ଦିଗନ୍ତ ଓ ନୂତନ ମଡ଼େଲର ସନ୍ଧାନ ମିଳିଥିଲା ଦାରଉଇନଙ୍କ ବିବର୍ତ୍ତନ ବାଦ ବା "ଅଭ୍ୟୁଥାନ କଥା"ର ତତ୍ତ୍ୱ ମଧ୍ୟରେ, ଯହିଁରୁ ଆସିଥିଲା ଏକ ନୂତନ ଅବବୋଧ ।

୧୮୩୨ ମସିହା ଫେବୃୟାରୀ ମାସ ଦକ୍ଷିଣ ଆମେରିକାବାଙ୍କ ବିଗଲ୍ [H. M. S. Beagle] ନାମକ ଏକ ପୋତରେ ଭ୍ରମଣ

---

|| ୧୩ || (b) And so the curiousity of the Renaissance, from having been literary, gradually became scientific. Such a cataract of new facts overwhelmed men that they could, at first, only be swept along with the current. The old systems were evidently wrong; Aristotle's physics and Ptolemy's astronomy and Galen's medicine could not be stretched to include the discoveries that had been made, Montaigne and Shakespeare are content with confusion : discovery is delightful, and the system is its enemy. It was not till the seventeenth century that the system-building faculty cought up with the new knowledge of matters of fact. All this, however, has taken us far from Erasmus, to whom Columbus was less interesting than the Argonants.

(History of Western Philosophy—page 503)

ଡାରୱିନ [୧୮୦୯-୧୮୮୨] ଯାତ୍ରା କରୁଥିଲେ । ବାସୁକୀ ଯେଉଁ ଧରଣୀକୁ ଫଣାରେ ଟେକି ଧରିଛି, ତହିଁରେ "ଜୀବ"ର ସଞ୍ଚାର କେବେ ହେଲା ଓ କିପରି ହେଲା—ଏଇ ଗହନ ପ୍ରଶ୍ନ ଥିଲା ତାଙ୍କର ଚିନ୍ତାର ବିଷୟବସ୍ତୁ । ପ୍ରାୟ ପାଞ୍ଚବର୍ଷପରେ ୧୮୩୬ ଅକ୍ଟୋବର ଦୁଇ ତାରିଖରେ ଜଳଯାତ୍ରାରୁ ଫେରିଲେ ଡାରଉଇନ । ତାଙ୍କର ଏଇ ଜଳଯାତ୍ରା ଆମର ସାଧବମାନଙ୍କ ଜଳଯାତ୍ରା ପରି ବ୍ୟର୍ଥରେ ଯାଇ ନ ଥିଲା । ସେ ଜୀବର ବିବର୍ତ୍ତନ କାହାଣୀ ସମ୍ବନ୍ଧରେ ଏକ ପ୍ରାମାଣିକ ସିଦ୍ଧାନ୍ତରେ ପହଞ୍ଚି ଯାଇଥିଲେ । ଏ ସମ୍ପର୍କୀୟ ସିଦ୍ଧାନ୍ତକୁ ଲିପିବଦ୍ଧକରି ତାଙ୍କର "Origin of Species" [On the Origin of speces by means of Natrual Selection or the preservation of favoured species in the struggle for life ] ୧୮୫୯ ମସିହାରେ ଓ "Descent of man" ୧୮୭୧ ମସିହାରେ ପ୍ରକାଶିତ ହୋଇଥିଲା ।

ବିବର୍ତ୍ତନ ବାଦର ପ୍ରଥମ ନିୟମ ହେଉଛି "ପରିବର୍ତ୍ତନ" [Variation] । ଜୀବନ ଉପଯୋଗୀ ପରିସ୍ଥିତିର ପରିବର୍ତ୍ତନ ଜୀବକୁ ପ୍ରତ୍ୟକ୍ଷ ଭାବରେ ପ୍ରଭାବିତ କରି ସଂଗଠନ ଓ ଜୀବନ ଧାରଣ ପ୍ରଣାଳୀକୁ ବଦଳାଇ ଦେଇଛି । ପୁଣି ପରୋକ୍ଷ ଭାବରେ ପ୍ରଜନନକୁ ପ୍ରଭାବିତକରି ଜୀବର ଦାୟାଦଠାରେ ସ୍ୱ ସ୍ମାରକ ରଖିଯାଉଛି । ଏହି ପରିବର୍ତ୍ତନର ନିର୍ଦ୍ଦିଷ୍ଟ ହେତୁ ନାହିଁ । ସମ ଅବସ୍ଥାରେ ପୃଥକ ପରିବର୍ତ୍ତନ ଓ ପୃଥକ ଅବସ୍ଥାରେ ସମ ପରିବର୍ତ୍ତନ ମଧ୍ୟ ସଙ୍ଗଠିତ ହୋଇପାରେ । ଏହାର ଦ୍ୱିତୀୟ ମୌଳିକ ସୂର ହେଲା "ଜୀବନ ସଂଗ୍ରାମ" [Struggle for Existence] । ଜୀବନର ସ୍ଥିତିପାଇଁ ବିଶ୍ୱର ଛତ୍ରେ ଛତ୍ରେ ଚାଲିଛି ନିୟତ ଏକ ନିଷ୍ଠୁର ଅନ୍ଧ ପ୍ରତିଯୋଗିତା । ଜୀବ ଜ୍ୟାମିତିକ ଗତିରେ ବୃଦ୍ଧିପାଉଛି । ଏହାର ବିନାଶପାଇଁ ସିରାଜଉଦ୍ଦୌଲାର ଅନ୍ଧକୂପ ହତ୍ୟା ଆବଶ୍ୟକ ନାହିଁ । କାରଣ ଜୀବ ମଧ୍ୟରେ ଚାଲିଛି ଜୀବନ ନାଶକାରୀ ଏକ

ନୂଆ ଜୀବନ ସଂଗ୍ରାମ । ଏହି ସଂଗ୍ରାମରେ ଲଲାଟରେ ବିଜୟଟୀକା ପିନ୍ଧନ୍ତି ସେହିମାନେ, ଯେଉଁମାନେ ଦୁର୍ଦ୍ଧାନ୍ତ, ସ୍ୱାସ୍ଥ୍ୟବାନ ଆଉ ସଂଗ୍ରାମୀ ।।୧୪।। ଏ ବସୁନ୍ଧରା ବୀରଭୋଗ୍ୟା । ଯୋଦ୍ଧା ଯେ, ବିଜୟଲକ୍ଷ୍ମୀ ତାର ।

|| ୧୪ || Each organic being is striving to increase in geometrical ratio, that each at some period of its life, during some season of the year, during each generation or at intervals has to struggle for life and to suffer destruction. When we reflect on this struggle, we may console ourselves with the full belief that the war of nature is not incessant, that no fear is felt, that death is generally prompt and that the vigorous, the healthy and the happy survive and multiply.

[Origin of Species, page 79, Everyman's Library, London, 1939].

X X X X ଜୀବନ ବିଜ୍ଞାନରେ ଏହି ଧାରାକୁ ମୋଟାମୋଟି ଭାବେ "Organismic Theory" ବୋଲି ଅଭିହିତ କରାଯାଇଛି । ଏ ସଂକ୍ରାନ୍ତରେ ଅନ୍ୟ କେତୋଟି ଉଲ୍ଲେଖ ଯୋଗ୍ୟ ପୁସ୍ତକ ଦେଲି :-

(i) Driesch, H:- The science and philosophy of Organisms N. Y., 1928
(ii) Needham, J:-Order and life. New Haven, 1936
(iii) Cannon, W. B:-The wisdom of the body, N. Y. 1939

biological problems Berkeley 1940,
(vi) Simpson, G G:- Tempo and mode in Evolution N. Y 1944
(iv) Carrel, A:- Man, the unknown, N. Y. 1939
(v) Holmes, S. J. :- Organic form and related
(vii) Huxley, J:-Evolution, the modorn Synthesis-4th Impression, London 1945
(viii) Russel, E S :-The directiveness of Organic Activities, canbridge, England 1945

ଯୋଗ୍ୟ ସେ ସେ ବଞ୍ଚିବାର ଦାବୀକୁ ସ୍ୱୀକୃତ କରାଇନିଏ । ଏଠି ମାଗୁଣି ନାହିଁ । କାକୁତି ନାହିଁ । ମାନଅଭିମାନ ନାହିଁ । ଯୋଗ୍ୟତମର ଉଜ୍ଜୀବନ [Survival of the Fittest] ହିଁ ବିବର୍ତ୍ତନବାଦର ଡୃତୀୟ ମୌଳିକ ସୂତ୍ର । ଡାରଉଇନ ଏହାକୁ ପ୍ରାକୃତିକ ମନୋନୟନ [Natural selection] ବୋଲି ନାମିତ କରିଥିଲେ । କିନ୍ତୁ ହର୍ବର୍ଟ ସ୍ପେନସର ଏହାକୁ "ଯୋଗ୍ୟତମର ଉଜ୍ଜୀବନ" ନାମରେ ଅଭିହିତ କରିଥିଲେ ଏବଂ ଏହି ନାମରେ ଏହା ବହୁଳ ଭାବରେ ପରିଚିତ ।

ଡାରଉଇନଙ୍କ ପ୍ରବର୍ତ୍ତିତ "ପରିବର୍ତ୍ତନ" ପ୍ରକ୍ରିୟାର ଆକସ୍ମିକତା [Accidental variations] ବିବର୍ତ୍ତନକୁ ଏକ ଉଦ୍ଦେଶ୍ୟ ବିହୀନ ଧାରାରୂପେ ପ୍ରତିଭାତ କରାଇଥିଲା । ଗୋଟିଏ ଦୃଷ୍ଟିରୁ ଏହା ଏକ ନିରାଶାବାଦୀ, ଭାଗ୍ୟବାଦୀ ଦୃଷ୍ଟିକୋଣର ପ୍ରାମାଣିକତା ରୂପେ ମଧ୍ୟ ଧରି ନିଆଯାଇଥିଲା । ସେକ୍ସପିୟର୍ [୧୫୬୪-୧୬୧୬] ଙ୍କ "As flies to wanton boys are we to the Gods-they kill us for their sports" ପରି ମଣିଷର ଜନ୍ମ ଅଭ୍ୟୁଥାନ କାହାଣୀର ଏଇ ଆକସ୍ମିକତା । ବିଶ୍ୱର ବିରାଟ କୁରୁକ୍ଷେତ୍ର ପଡ଼ିଆରେ ଲାଗିଛି ପ୍ରକୃତିର ଲୀଳା-ଯୁଦ୍ଧ । ଧର୍ମ ଯୁଦ୍ଧ ନୁହେଁ । ସେଠାରେ ଏକ ଆତ୍ମରକ୍ଷାର ଶଠ-ଯୁଦ୍ଧ । କପଟ-ପାଶା, ଜିତିରେ ଜୀବ ଯେମିତି ଖାଲି ଏକ କ୍ରୀଡ଼ନକ ଏକ ମାଧ୍ୟମ । କମିଥ ମାତ୍ର, ତଥାପି ମଧ୍ୟ ଏକ ଅଭିମତ୍ୟ, ସେଇଥିପାଇଁ ଉତ୍ତର-ଡାରଉଇନବାଦୀମାନେ [Neo-Darwinians] ଆଉ ଗୋଟିଏ ତତ୍ତ୍ୱ ବାଢ଼ିଥିଲେ-ତାକୁ "Theory of Orthogenesis" କୁହାଯାଏ ।

---

(ix) Sherrington, Sir charles S:- Man and his nature cambridge, England 1945

(x) Lilie, R. S:- Genreal biology and philosophy of the Organism- Chicago, 1945

(xi) Alexander, J:- Life, its Nature and Origin N. Y 1948

ଏହି ତତ୍ତ୍ୱ ଅନୁସାରେ ଜୀବକୋଷ [Protoplasm]ରେ ଏକ ପ୍ରକାରର ଅନ୍ତର୍ନିହିତ ପ୍ରବଣତା ଅଛି । ଯାହା ପରିବର୍ତ୍ତନର ପାହାଚରେ ଜୀବକୁ ନିର୍ଦ୍ଦିଷ୍ଟ ଦିଗରେ ପଥ କଢ଼ାଇ ନିଏ । ଏହା ଏକ ପ୍ରକାରର ଜୈବିକ-ନିୟତି [ Protoplasmic-destiny ] । ବୈଜ୍ଞାନିକ ଏର୍‌ୱିନ ସ୍ରୋଡ଼ିଙ୍ଗର ଦର୍ଶାଇଥିଲେ ଯେ ଏହି ଆକସ୍ମିକ ପରିବର୍ତ୍ତନ ଦାୟାଦ ସୂତ୍ରରେ ପ୍ରକଟିତ ହୋଇପାରିବନାହିଁ । "ପରିବର୍ତ୍ତନ" ଧାରାକୁ ସେ କ୍ୱାଣ୍ଟମ୍-ତତ୍ତ୍ୱ ସାହାଯ୍ୟରେ ବୁଝାଇବାର ପ୍ରୟାସ କରିଥିଲେ ॥୧୫॥ ଜୀବନ-ବିଜ୍ଞାନବିତ୍ ବର୍‌ଟାଲାନ୍‌ଫି ଆଉ ଟିକିଏ ଆଗକୁ ଯାଇ କହିଲେ ଯେ ପରିବର୍ତ୍ତନ ଆକସ୍ମିକ ନୁହେଁ ବା mutation [Naudin de vries] ଯୋଗୁ ବା କ୍ୱାଣ୍ଟମ ତତ୍ତ୍ୱ ଅନୁସାରେ ସଙ୍ଗଠିତ ହେଉନାହିଁ । ଏହା କେତେକ ଜୈବିକ ନିୟମ [Organic laws] ଦ୍ୱାରା ସର୍ବତୋଭାବେ ପରିଚାଳିତ ॥୧୬॥ ଦାର୍ଶନିକ ହେନେରୀ ବର୍ଗସନ୍ କହିଲେ

---

॥୧୫॥ Darwin was mistaken in regarding the small accidental continuous variations that are bound to occur even in the most homogenious population as the material on which natural selection works, for they are not inherited [page 22
In Darwin's theory you have to substitute "mutations" for his slight accidental variations just as quantum theory substitutes quantum jump for continuous transfer of energy [page 36]

[what is life-Erwin schrodinger,1943]

॥୧୬॥ Problem of Life, an evaluation of modern biological thought. -Ludwig von Bertanlaffy-watts and co, London, 1952.

ସେ ଜୀବର କ୍ରମ ଅଭ୍ୟୁଥାନ ପଛରେ ସୃଷ୍ଟିର ଏକ ଆଦିମ ପ୍ରେରଣା ବା ସୃଜନୀ ଶକ୍ତି [Elan vital] ରହିଛି । ଏହି ସୃଜନୀ ଶକ୍ତିକୁ ଏକ ସଂଜ୍ଞାହୀନ ଅଗ୍ରବବୋଧ, ଏକ ନିର୍ଯ୍ୟାଣଶୀଳତାର ପ୍ରଚ୍ଛେଦନା, ଏକ ଚିରନ୍ତନ କ୍ରିୟା ଭାବରେ ଚିନ୍ତନ କରାଯାଇପାରେ । ବିବର୍ତ୍ତନ ଏକ ସୃଜନଶୀଳ ଧାରାର ପ୍ରବାହ-ଏକ କଳାକାରର କୃତ ପଣ । ଏହାର ଗତି ବା ଦିଗକୁ ନିୟନ୍ତ୍ରିତ କରିହେବନାହିଁ । "ଜୀବନ" ସେକ୍ସ୍‌ପିଅରଙ୍କ "ଚଳନ୍ତ-ଛାୟା" [ Walking shadow ] ନୁହେଁ କି ସେଲିଙ୍କ ବହୁବର୍ଣ୍ଣର ଏକ କାଚ ଗମ୍ବୁଜ [ dome of many coloured glass ] ନୁହେଁ । ଏହା ବହୁ ଭାଗରେ ବିଭକ୍ତ ହୋଇ ବିସ୍ଫୋରିତ ହେଉଥିବା ଏକ ଗୁଳି [shell] ଯାହାର ପ୍ରତ୍ୟେକ ଅଂଶ ମଧ୍ୟ ଏକ ଏକ ଗୁଳିରେ ପରିଣତ ହୋଇଯାଏ ॥୧୭॥ ବୈଜ୍ଞାନିକ "ନସ୍" ତାଙ୍କର "ମଣିଷର ନିୟତି" ପୁସ୍ତକରେ ଏଇ ସୃଜନଶୀଳ ପ୍ରବଣତାର ଏକ

---

॥୧୭॥ A very inferior organism is as well adapted to the conditions of existence gudged by its success in maintaining its life; why then does life which has succeeded in adapting itself, go on complicating itself more and more dangerously ?... Why has it gone on ? why-unless it be that there is an impulse driving it to take ever greater and greater risks towards its goal of an ever higher and higher efficiency ?

ବୈଜ୍ଞାନିକ ବିଶ୍ଳେଷଣ ନିମି ବିବର୍ତ୍ତନରେ ମାଧ୍ୟାକର୍ଷଣ ଭଳି ଏକ ଶକ୍ତି କାର୍ଯ୍ୟକରୁଛି ବୋଲି ଦର୍ଶାଇଛନ୍ତି । ତାଙ୍କୁ ସେ Telefinality ବୋଲି କହିଛନ୍ତି । "ରିଡ଼ରସ୍‌ଡାଇଜେଷ୍ଟ" "ନୟୁଙ୍କୁ" ଭଗବାନଙ୍କ ସଦ୍ୟତମ ପ୍ରମାଣ [ God's newest witness ] ବୋଲି ବଧାଇ ଜଣାଇଥିଲେ । 'ନୟୁ'ଙ୍କ ମତରେ ଅଭିଯୋଜନା [ Adaptation ] ବା ପ୍ରାକୃତିକ

---

When a shell bursts the particular way it breaks is explained both by the explosive force of the powder it contains and by the resistance of the metal. So of the way life breaks into individuals and species. It depends, we think, on two series of causes,the resistance life meets from inert matter, the explosive force-due to an unstable balance of tendencies-which life bear within itself (page 109)

[Creative Evolution-Henry Bergson, translated by Arthur Mitchell, the modern Library, New York, 1944]

See also History of western philosophy-Bertrand Russel, Unwin University Books, 1961 page- 746.

ମନୋନୟନ ଯୋଗୁ ବିବର୍ତ୍ତନ ସମ୍ଭବ ନାହିଁ । ଏହା ସମ୍ଭବିଛି ଏକ "ସୃଜନଶୀଳ-ଅସ୍ଥିରତା" ସକାଶେ ।।୧୮।।

ବସ୍ତୁବାଦୀ ବୈଜ୍ଞାନିକଗଣ [ଲାଇସେନ୍କୋ ଓ ମାଇସୁରିନ୍ବାଦୀ] ମାଲ୍ଥସ୍ଙ୍କ ଜନମିତି [Population theory] ଉପରେ ପର୍ଯ୍ୟବସିତ ପ୍ରାକୃତିକ ମନୋନୟନ ପ୍ରଣାଳୀର ବିରୋଧ କରୁଥିଲେ ।।୧୯।। ନିର୍ଦ୍ଦିଷ୍ଟ ପରିସ୍ଥିତିର ସମାବେଶରେ ଜୀବ ଯେଉଁ ସବୁ ଗୁଣ ବା ଉପାଦାନ

---

।।୧୮।। Only one strain amongst all the others never attained equilibrium and yet survived. That was the line that ended in Man. Perfect adaptation was therefore never a goal as Lamarck believed. This could be called creative instability............... Evolution can only continue through unstable systems or organisms. It only progresses from instability to instability and would perish if it only encountered perfectly adapted stable systems...... Adaptation works to neutralise its own anterior efforts and natural selection tends to eliminate those it has heretofore protected......... In such cases adaptation is not progressive but protective and defensive.

[Human Destiny—Le comte du Nouy, 1949. Signet Books, pages 69-71]

।।୧୯।। In October 1838, that is fifteen months after I had begun my systematic enquiry I happend

ସଂଗ୍ରହ କରେ ତାହା ବଂଶ ପରମ୍ପରାକ୍ରମେ ବାଣ୍ଟାଦ ସୂତ୍ରରେ ପ୍ରକଟ ହୁଏ- ଏହା ଥିଲା ଲମାର୍କ [୧୭୪୪-୧୮୨୯] ଓ ଡାରଉଇନଙ୍କ ମତ । ପରେ ଉଇଜ୍‌ମାନ [୧୮୩୪-୧୯୧୪], ମେଣ୍ଡେଲ [.........] ଓ ମୋର୍ଗାନ [୧୮୫୨-୧୯୩୭] ପ୍ରଭୃତି ବୈଜ୍ଞାନିକଗଣ ଏହି ମତର ବିରୋଧ କରିଥିଲେ ଏହାଦ୍ୱାରା ପରିସ୍ଥିତି ଯେ ଜୀବର ଗଠନ ଉପରେ ପ୍ରଭାବ ପକାଇ ପାରୁନାହିଁ ତାହା ସ୍ୱୀକାର କରାଯାଇଥିଲା । କିନ୍ତୁ ବସ୍ତୁବାଦୀ ବୈଜ୍ଞାନିକ-ଗଣଙ୍କ ମତରେ ଏ ଧାରଣା ପ୍ରମାଦପୂର୍ଣ୍ଣ । ଜୀବ ଓ ତାର ଜୀବନଧାରଣ-ପାଇଁ ଆବଶ୍ୟକୀୟ ପରିସ୍ଥିତି ଅଭିନ୍ନ ନୁହନ୍ତି । ଏହି ପରିସ୍ଥିତିର ପ୍ରଭାବ

---

to read for amusement Malthus on population and being well prepared to appreciate the struggle for existence which everywhere goes on from long continued observations of the habits of animals and plants it atonce struck me that under these circumstances favourable variations would tend to be preserved and unfavourable ones to be destroyed... Here then I had atlast a theory by which to work.

[The Life and Letters of Charles Darwin, London, 1887 vol.I—page 83]

A major fault for example, is the fact that along with the materialist principle, Darwin introduced into his theory of evolution reactionary Malthusian ideas. In our days this major fault is being aggravated by reactionary biologists.

ଜୈବିକ ଉପାଦାନଗୁଡ଼ିକ ଅନୁଶୀଳନ କଲେ ଜୀବର ଗଠନ ଓ ବଂଶାନୁକ୍ରମ [ Heredity ]ର ମୌଳିକ ନୀତି ବିଷୟରେ ସଠିକ ଜ୍ଞାନ ଆହରଣ କରିହେବ ॥୨୦॥ ବଂଶାନୁକ୍ରମର ପରିବର୍ତ୍ତନର ମୌଳିକ ହେତୁ ହେଉଛି ଏକ ପୃଥକ ବୃଦ୍ଧି [ growth ] ପ୍ରଣାଳୀ । ନୂତନ ପରିସ୍ଥିତି ଦ୍ୱାରା ପ୍ରଭାବିତହୋଇ ଜୀବଜୀ ଶରୀରର ପରିବର୍ତ୍ତନ ସାଧିତ ହେଲେ ନୂତନ ଜାତି [ species ] ଜନ୍ମଲାଭ କରେ ।

ସପ୍ତଦଶ ଶତାବ୍ଦୀରେ ଜୀବ ବିଜ୍ଞାନରେ ଗାଲିଲିଓ ଓ ନିଉଟନଙ୍କ ସ୍ଥାନ ଯାହାଥିଲା ଊନବିଂଶ ଶତାବ୍ଦୀରେ ଡାରଉଇନଙ୍କ ସ୍ଥାନ ସେଇଆ । ଡାରଉଇନଙ୍କୁ "ଜୀବନ ବିଜ୍ଞାନରେ ନିଉଟନ" ବୋଲି ମଧ୍ୟ ବେଳେବେଳେ କୁହାଯାଇଥାଏ । ଯୁଗର ସମସାମୟିକ ଚିନ୍ତାଧାରା ଉପରେ ଡାରଉଇନଙ୍କ

---

[Extract from the adress delivered at the session of the Lenin Akademy of Agricultural Sciences of the U. S. S. R., July 31, 1948 by J. D. Lysenko]

॥୨୦॥ Heridity is the Property of a living body to require definite conditions for its life and development and to respond in a definite way to various conditions...... Consequently to ascertain the environmental condition required by a living body (or organism) for the development of particular characters or properties is tantamount to studying the nature is the heredity of these particular characters or properties.

[Heredity and its variability-Lysenko, Moscow ,pages 6-7]

Origin of Speciesର ପ୍ରଭାବ କେବଳ 'ରୁଷୋ'ଙ୍କ Contract social [୧୭୬୨], ମାର୍କସ୍‌ଙ୍କ Das Capital [୧୮୬୭], ଷ୍ଟୋଙ୍କ Uncle Toms Cabin [·········] ଅବା ପେନ୍‌ଙ୍କ Rights of man ସଙ୍ଗେ ତୁଳନା କରାଯାଇପାରେ ||୨୧|| ଏଞ୍ଜେଲସ୍‌ଙ୍କ ମତରେ ପ୍ରାକୃତିକ ଧାରା ଗୁଡ଼ିକର ପାରସ୍ପରିକ ସମ୍ବନ୍ଧ ସଂପର୍କୀୟ ଜ୍ଞାନ ତିନୋଟି ଆବିଷ୍କାରଦ୍ୱାରା ସମ୍ଭବ ହୋଇଥିଲା—ଜୀବକୋଷ [cell]ର ଆବିଷ୍କାର, ଶକ୍ତି, [Energy]ର ରୂପାନ୍ତର ଓ ଡାରଉଇନଙ୍କ ବିବର୍ତ୍ତନ ବାଦ । କପରନିକସ୍‌ [୧୪୭୩-୧୫୪୩]ଙ୍କ ଆବିଷ୍କାର ବା ପରବର୍ତ୍ତୀ କାଳରେ ସିଗମଣ୍ଡ ଫ୍ରଏଡ୍‌ [୧୮୫୭-୧୯୩୯]ଙ୍କ ଅବଚେତନ ମନ ଆବିଷ୍କାର ପରି ଡାରଉଇନଙ୍କ ବିବର୍ତ୍ତନବାଦ ମଣିଷର ଚିନ୍ତାଧାରାକୁ ଖୁବ୍ ପ୍ରଚାର କରିଦେଲା । ମଣିଷ ଆଉ ବିଶ୍ୱର ଶ୍ରେଷ୍ଠ ବା ସାର୍ଥକ ସୃଷ୍ଟି ନୁହେଁ । ବିଶ୍ୱକୁ ସାର୍ଥକଭାବେ ଭରିଦେବାପାଇଁ ମଣିଷ ପରମେଶ୍ୱରଙ୍କର ଇଚ୍ଛାକୃତ ବା ସଚେତନ ସୃଷ୍ଟି ବି ନୁହେଁ । 'ପଶୁବୃତ୍ତି' ମଣିଷର ଚିନ୍ତାଧାରା—ଏକ ଚେତନାହୀନ, ଯୁକ୍ତିହୀନ ପ୍ରାକୃତିକ ସତ୍ତା । କ୍ରମେ ସମାଜର ସବୁ ପ୍ରକାରର ଅବସ୍ଥାକୁ ଡାରଉଇନବାଦ ବା ଅଭ୍ୟୁଥାନ ତତ୍ତ୍ୱ ସାହାଯ୍ୟରେ ବ୍ୟାଖ୍ୟା କରିବାର ପ୍ରୟାସ ପରିଲକ୍ଷିତ ହେଲା, ||୨୨|| ସବୁ ପ୍ରକାରର ପ୍ରତିଯୋଗିତାହିଁ ସାମାଜିକ କ୍ରିୟାଶୀଳତାର ମୂଳ ଉତ୍ସ

---

||୨୧|| Meaning and purpose,--an analysis of the main scientific theories of the last hundred years and their impact upon religious thoughts and beliefs—by kenneth walker, pelican Book, 1950, page 45

||୨୨|| The Origin of species provided texts by which almost any line of thought could be justified with the help of necessary adjustments. [ Ibid—page 53 ].

ରୂପେ ବିବେଚିତ ହେଲା ॥୨୩॥ କାରଣ ବିବର୍ତ୍ତନ ବାଦରୁ ପରିଷ୍କାର ହୋଇଗଲା ଯେ "ଯେଉଁମାନେ ନିଜକୁ ସାହାଯ୍ୟ କରନ୍ତି ଭଗବାନ ସେଇମାନଙ୍କୁ ସାହାଯ୍ୟ କରନ୍ତି" [God helps those who help themselves] । ଏହା ଅର୍ଥନୈତିକ ଉଦାରପନ୍ଥୀ ଓ ଶିଳ୍ପ ବିପ୍ଳବର ପୁରୋଧାମାନଙ୍କ ରକ୍ଷାକବଚ ରୂପେ କାର୍ଯ୍ୟକଲା ॥୨୪॥ ଏବଂ ପରବର୍ତ୍ତୀ କାଳରେ ମାର୍କସ [୧୮୧୮-୧୮୮୩]ଙ୍କ "ଶ୍ରେଣୀ ସଂଘର୍ଷ" ତତ୍ତ୍ୱ ପାଇଁ ବାଟ ଫିଟାଇଦେଲା । ପୁଣି ଏହା ବେନ୍ଥାମ [୧୭୪୮-୧୮୩୨]ଙ୍କ ପ୍ରବର୍ତ୍ତିତ Greatest good of the greatest number ଓ Auguste Conte [ ୧୭୯୮-୧୮୫୭ ]ଙ୍କ ପ୍ରବର୍ତ୍ତିତ Religion of Humanity [Positive Idealism]ର ପରିପନ୍ଥୀ ରୂପେ ମଧ୍ୟ ଦଣ୍ଡାୟମାନ ହେଲା । କାରଣ ଡାରଉଇନବାଦ ମଣିଷ-ମଣିଷ ଭିତରେ ସାମ୍ୟ (Equality of Man) ଓ ମଣିଷର ଅଧିକାର (Rights of Man)—ଏଇ ଦୁଇ ତତ୍ତ୍ୱର ବିରୋଧୀ ଥିଲା ।

ମାନବବାଦ (Humanism) ଡାରଉଇନଙ୍କ ତତ୍ତ୍ୱର ପୃଷ୍ଠପୋଷକ ଭାବେ ଆଗେଇ ଆସିଥିଲା କାରଣ ଏ ସଂସାରରେ ପାପ ଅନ୍ୟାୟ, ଅତ୍ୟାଚାର (Probelm of Evil) ସ୍ଥିତି ଡାରଉଇନବାଦ ସାହାଯ୍ୟରେ

---

॥୨୩॥ The new keynote. is expressed in the word "competition".

Thou shall not murder, but tradition
Approves of all forms of competition
(Adventure of Ideas—A. N. Whitehead
Chapter III Section III and IV

॥ ୨୪ ॥ Laissez Faire or Economic Liberalism.

ସୁନ୍ଦରଭାବେ ବୁଝାଇଦେବା ସମ୍ଭବ ହେଲା ।—ସୃଷ୍ଟି ଆଉ ବିବର୍ତ୍ତନର ଧାରାରେ, ଏଇ "ଭେଳ"ର ବୀଜ ନିହିତ ଅଛି । ଏହା ସ୍ୱାଭାବିକ, ଏକ ପ୍ରାକୃତିକ ଧାରାର ପରିଣତି । ସେହିପରି ସମାଜବାଦୀ (Socialists) ମାନେ ଡାରଉଇନବାଦକୁ ଗ୍ରହଣ କରିନେଇଥିଲେ । କାରଣ ବିବର୍ତ୍ତନର ଧାରାରେ ସମାଜ (Society)ର ଗୁରୁତ୍ୱ ଓ ଅପରିହାର୍ଯ୍ୟତା ଦୃଷ୍ଟିରୁ "ସମାଜର ସଂସ୍କାର" ସମାଜବାଦୀ କାର୍ଯ୍ୟକ୍ରମରେ ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କଲା ।

ଏହିରୂପେ ଜାତୀୟ ଯୁଦ୍ଧ (National war), ଓ ଶ୍ରେଣୀଯୁଦ୍ଧ (Clas war), ରାଜନୈତିକ ସମର ପ୍ରବଣତା (Political militarism) ଓ ସାମାଜିକ ସମର ପ୍ରବଣତା (Social militarism) ସଙ୍ଗଠିତ କରିବାରେ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ ଡାରଉଇନବାଦର ଗୁରୁତ୍ୱପୂର୍ଣ୍ଣ ଅବଦାନ ରହିଛି । କାରଣ ଏହା ଅଯୋଗ୍ୟ ଜାତି-ଶ୍ରେଣୀ-ସମାଜ-ମତର ଏକ ନିଷ୍କାସନ ଧାରା । ॥୨୫॥ ଏହିରୂପେ ସାମାଜିକ-ଜାତୀୟ ସ୍ତରରେ ଏକ ପ୍ରଣାଳୀ-ଅବଲମ୍ବନ ରୂପେ ଯୁଦ୍ଧ-ସଂଘର୍ଷ ଏକ ମତ-ଆୟୁଧ ରୂପେ ଗୃହୀତ ହୋଇଗଲା ॥୨୬॥

---

॥୨୫॥ ପୁରାତନ ଗ୍ରୀକ୍ ଡାକ୍ତର ହିପୋକ୍ରେଟସ୍ କହିଥିଲେ "what medicine does not heal is healed by Iron, what iron does not heal is healed by fire."

ସେହିପରି ଏ ଯୁଗ ପାଇଁ କୁହାଯାଇ ପାରେ ଯେ what fire does not heal is healed by war.

॥୨୬॥ ଆଗରୁ ମାକେଭିଲ [୧୪୬୭-୧୫୨୭]ଙ୍କ "prince"ର ନାୟକ Casare Borgia ନିଜର ବିରୋଧୀ ସେନାପତିମାନଙ୍କୁ ନିମନ୍ତ୍ରଣ କରି ସେମାନଙ୍କର ଶିରଚ୍ଛେଦ କରିଥିଲା । ୧୬୫୧ ରେ ପ୍ରକାଶିତ Leviathan ରେ ହବ୍‌ସ୍ [୧୫୮୮-୧୬୭୯] କହିଲେ "The normal state of relationship between men is a state of

ବିବର୍ତ୍ତନବାଦର ଆଉ ଏକ ଅବଦାନ ହେଲା, ମଣିଷ ଜୀବନ ଓ ସମାଜ ସହିତ ସଂପୃକ୍ତ ସମସ୍ତ ପ୍ରକାର ପ୍ରକ୍ରିୟା ଯେ ଏକ କ୍ରମବିକାଶର ପ୍ରକ୍ରିୟା ପରିଣତ ଓ କ୍ରମବିକାଶ ଏଇ ଧାରଣାଟି ଚିନ୍ତାରାଜ୍ୟରେ ସ୍ୱୀକୃତ ହେବା । ଡାରୱିନ ତାଙ୍କର Origin of Speciesରେ ଏକ ଐତିହାସିକ ପୃଷ୍ଠଭୂମିରେ ବିବର୍ତ୍ତନବାଦର ଆଲୋଚନା କରି ତହିଁରେ ବିଶ୍ୱାସ କରୁଥିବା ତାଙ୍କର ପୂର୍ବବର୍ତ୍ତୀ ୩୪ ଜଣଙ୍କର ନାମ ଉଲ୍ଲେଖ କରିଛନ୍ତି ! ଏପରିକି ଦାର୍ଶନିକ ସୋପେନ ଆୱାର (୧୭୮୮-୧୮୬୦)ଙ୍କ ମଧ୍ୟରେ ଡାରୱିନବାଦର ସମସ୍ତ ପରିକଳ୍ପନା ଅବଚେତନ ଓ ପରୋକ୍ଷ ଅବସ୍ଥାରେ ଦେଖିବାକୁ ମିଳେ ॥୨୭॥ ଯେଉଁପରି ହର୍ବର୍ଟ ସ୍ପେନ୍‌ସର (୧୮୨୦-୧୯୦୩)ଙ୍କ

---

war". ମୁସୋଲିନ୍ ଥରେ କହିଥିଲେ—"For me violence is perfectly moral, more moral than compromise. War is to men what motherhood is to women". ହିଟଲର ତାଙ୍କ ଆତ୍ମଜୀବନୀ mein kampf [ My struggle ]ରେ ଠାଏ ଲେଖିଛନ୍ତି:—"The fight of the year 1914 was certainly not forced upon the masses good God ! but desired by the entire People——To me personally, those hours appeare like redemption ———overwhelmed by impassionate enthusiasm I had fallen on my knees and thanked Heaven out of my overflowing heart that it had granted me the good fortune of being allowed to live in these times.

॥ ୨୭ ॥ Sehopen houerଙ୍କ "ueber den Willen inder Natur" [୧୮୩୫-୩୬] ପୁସ୍ତକରେ ପ୍ରକୃତିରେ ଜୀବନ ରକ୍ଷାପାଇଁ ସଂଗ୍ରାମର ଛବି ଦେଖିବାକୁ ମିଳେ । ମଣିଷର ପ୍ରଜ୍ଞା [Intellect]କୁ ଏହି ସଂଗ୍ରାମର ଆୟୁଧରୂପେ ପ୍ରଥମସ୍ଥାନ ଦିଆଯାଇଛି ଏବଂ ପ୍ରେମକୁ ଜୀବନବଞ୍ଚିବାର

ରଚନାବଳୀ ମଧ୍ୟରେ ଡାରଉଇନବାଦ ସହ ସାମଞ୍ଜସ୍ୟ ଥାଇ ଅନେକ ଭାବଧାରା ଦେଖିବାକୁ ମିଳେ ॥୬୮॥ ବିବର୍ତ୍ତନବାଦର ପ୍ରତ୍ୟକ୍ଷ ପ୍ରଭାବରେ ପରବର୍ତ୍ତୀ କାଳରେ Animal Psychology ଓ Comparative psychology ର ସୃଷ୍ଟି ହେଲ ॥୭୯॥ ଆମେରିକାର Functional psychology ମୁଖ୍ୟତଃ ବିବର୍ତ୍ତନବାଦର କ୍ରମ ଅଭ୍ୟୁଥାନ ଭାବଧାରା ଉପରେ ପର୍ଯ୍ୟବସିତ । ଉଇଲିଅମ ଜେମ୍ସ୍ (୧୮୪୨-୧୯୧୦) ଥିଲେ

---

କାର୍ଯ୍ୟକାରୀ ପ୍ରେରଣାରୂପେ ଏକ ପରୋକ୍ଷ ମନୋନୟନ ପ୍ରଣାଳୀ [Unconscious Selection] ଆକାରରେ ଚିହ୍ନଟ କରାଯାଇଛି ।

॥ ୬୮ ॥ Principles of psychology—1855 [Evolutionary Associationism]. The associative laws of frequency operates phylogenetically inheritance of acquired associations].

George Henry Lewes [ 1817—1878 ] ମଧ୍ୟ evoluationary psychologyର ପୃଷ୍ଠପୋଷକ ଥିଲେ ।

॥ ୬୯ ॥ (i) Expression of the Emotions in Man and Animals—Charles Drawin, 1872.

(ii) John Romanes [1848— 1894] Animal Intelligence—1882

Mental Evolution in Animals—1883

Mental Evolution in Man—1887

(iii) Loyd Morgan [1852—1936]

Animal life & Intelligence—1890-91

Animal Behaviour—1900

Introduction to Comparative Psychology—1894

ଏହାର ମୁଖ୍ୟ ନିୟାମକ ||୩୦|| ସେହିପରି (Comparative Anatomy Embryology, Genetics, ଓ cytology, Natural History ଓ Ecology, Palacontology, ପ୍ରଭୃତି ବହୁ ବିଭାଗ ବିବର୍ତ୍ତନ-ବାଦଦ୍ୱାରା ପ୍ରଭାବିତ ହୋଇଥିଲା ।

କିନ୍ତୁ ବିବର୍ତ୍ତନବାଦର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଅବଦାନ ହେଲା "ପ୍ରଗତି" [Progress]ର ଧାରଣା । ଶିଳ୍ପ ବିପ୍ଳବ ଓ ଊନବିଂଶ ଶତାବ୍ଦୀର ବହୁ ବୈଜ୍ଞାନିକ ଆବିଷ୍କାର ସହ ସଂଯୋଜିତ ହୋଇ ଏହା ପ୍ରଗତିର ଧାରଣାକୁ ଦୃଢ଼ୀଭୂତ କଲା । ଭବିଷ୍ୟତ ଏକ ପୂର୍ଣ୍ଣତାର କାଳ । ଅତୀତ ଏକ ଅପରିପୂର୍ଣ୍ଣ କାଳ । ବର୍ତ୍ତମାନ, ଅତୀତର ଭବିଷ୍ୟତ ଆଡ଼କୁ ଏକ ପ୍ରବାହ—ଅପରିପୂର୍ଣ୍ଣର ପରିପୂର୍ଣ୍ଣତା ଆଡ଼କୁ ଏକ ପ୍ରବାହ । ଏ ଧାରଣା ମଣିଷ ପକ୍ଷରେ ନୂଆ ଥିଲା । ଏହାପରେ ଆସିଲା ସ୍ୱପ୍ନଯୁଗ ବା ସୁବର୍ଣ୍ଣଯୁଗର ଧାରଣା । ସ୍ୱପ୍ନ, ଅତୀତ ନୁହେଁ, ଭବିଷ୍ୟତ । ଆଗାମୀର

---

(iv) Works of Jacques Loeb [1859—1924] Sir John Lubbock [1834--1913], J. Henri Fabre [1823--1915], Auguste Forel [1848—1931], Albrecht Bethe [1872—1931], H. S. Jennings [1868—1947] etc.

Establishment of continuity of mind in the evolutionary scale. Development is shown to depend on the species and not on schooling alone.

|| ୩୦ || (i) Principles of Psychology—William James, 1890 [Stream of Consciousness].

(ii) Works of (a) Trumbull Ladd [1842—1921] The function of mind is adaption.

ଯୁଗ ଏକ ପୂର୍ଣ୍ଣତାର ଯୁଗ । ଭବିଷ୍ୟତ ବର୍ତ୍ତମାନ ହେବ । ସ୍ୱପ୍ନ ବାସ୍ତବ ହେବ ।

ପୁରାତନ ଗ୍ରୀକ୍ ଓ ରୋମାନ ସଭ୍ୟତାର ସୁବର୍ଣ୍ଣଯୁଗ ଅତୀତରେ ପରିକଳ୍ପିତ ଥିଲା । ଭାରତୀୟ ସଭ୍ୟତାର ସୁବର୍ଣ୍ଣଯୁଗ ଅତୀତରେ ଥିଲା । "ଅତୀତ" ପୃଥିବୀର ପ୍ରାୟ ସବୁ ପୁରାତନ ସଭ୍ୟତାର ସୁବର୍ଣ୍ଣଯୁଗରୂପେ ବିବେଚିତ ହୋଇଥିଲା । "ସତ୍ୟଯୁଗ" ହିଁ ଆମର ସୁବର୍ଣ୍ଣଯୁଗ । ପ୍ରାଚୁର୍ଯ୍ୟ ନ୍ୟାୟ,ମୂଲ୍ୟବୋଧର ଆଦର୍ଶଯୁଗ ଏବଂ ଆପଣା ସୁନା,କ୍ରମେ ଭେଣ୍ଡିରେ ପରିଣତ ହେଉଛି, ଶନୈଃ ଶନୈଃ ଏହାର ଅବକ୍ଷୟ ଘଟୁଛି । "କଳିଯୁଗ" ଏହି ସୋପାନର ସର୍ବ ନିମ୍ନରେ—ଯେଉଁଠି ଅଛି "କଳ୍କି ଅବତାର," "ମ୍ଳେଚ୍ଛସଂହାର," "ବାରହାତଖଣ୍ଡା।""ବାରକାଠି ଚେରଗୋଲ" ଇତ୍ୟାଦି । ପ୍ରତ୍ୟେକ ଆନ୍ଦୋଳନ ବା ଭାବଧାରା ଏକ ସୁବର୍ଣ୍ଣଯୁଗରେ ବିଶ୍ୱାସ କରେ । ମୁଖ୍ୟତଃ ଏ ଗୁଡ଼ିକ ଦୁଇ ଭାଗରେ ବିଭକ୍ତ—ପ୍ରଗତିଶୀଳ ଓ ଦ୍ରଗଢ଼ବାଦୀ । ପ୍ରଗତିଶୀଳ ଆନ୍ଦୋଳନ ବା ଭାବଧାରାରେ "ଅତୀତ"ରେ ସୁବର୍ଣ୍ଣଯୁଗର

---

(b) James Mark Baldwin [1861—1934]-Theory of organic Selection.

(c) John Dewey [1859—.........]

He saw the survival of the fittest as meaning that use and functional practice are basic to progress, that struggle is fundamental in life, that kings have no divine right because nature rules by selection among random individual differences, and that even this aristrocracy of chance can be overcome by social inheritance and social evolution [A History of Experimental Psychology—Edwin G. Boring, The Times of India Press, Bombay, 1969 pages 553-554]

(d) Etc. etc.

ଥାପନା କରିଯାଇଥାଏ । ପ୍ରଗତିବାଦୀ ଭାବଧାରା ମଧ୍ୟରେ 'ସ୍ୱର୍ଣ୍ଣଯୁଗର କଳ୍ପନାଥାଏ ଭବିଷ୍ୟତରେ ||୩୧||

କ୍ରମେ 'ପ୍ରଗତି'ର ଏହି ଧାରଣା ଏକ 'ବିଶ୍ୱାସ, ଓ ସଂସ୍କାରରେ ପରିଣତ ହୋଇଗଲା । ଦୁଇଟି ମହାଯୁଦ୍ଧ ପରେ ଏବେ ବି ସେହି ଧାରଣା ବଳବତ୍ତର ଅଛି ||୩୨||, ଏହାହିଁ ଏହି ସଂସ୍କାର ସପକ୍ଷରେ ଯଥେଷ୍ଟ ପ୍ରମାଣ ।

ପ୍ରଗତିବାଦର ଏହି ଧାରଣାକୁ "ଗଳ ସ୍ୱନାଳନ ଚଳା" ପ୍ରଗତି କୁହାଯାଉଥିଲା । ଏହାର ନିର୍ଦ୍ଦିଷ୍ଟ ଧାରା ଥିଲାନାହିଁ । ଏ ପ୍ରଗତିରେ ଯୋଜନା ନାହିଁ । ଚିନ୍ତା ନାହିଁ । ଚେଷ୍ଟା ନାହିଁ । ମନ ନାହିଁ । ମାନସୀ ବି ନାହିଁ ।

---

||୩୧|| All movements believe in the golden age. You can devide them into reactionary and progressive movements from the fact that the reactionary movements have their golden age in the past, the progressive movements look forward to the golden age in the future.

[Democratic Socialism—Ashck Mehta, 1951, page-10.]

||୩୨|| So intense is our faith in the dogma of inevitable progress that it has survived two world wars and still remains flourishing in spite of totalitarianism, and the revival of slavery, concentration camps and saturation bombing.

[Science, Liberty and Peace—Aldous Huxley, Chatto & Windus London, 1947 page-26.]

ଏହା କେବଳ ପ୍ରକୃତି ଓ ଦଇବ [Nature and chance]ର ଲୀଳାଖେଳା ମାତ୍ର । ପ୍ଲାଟୋ ବହୁଦିନ ତଳେ ଏହିପରି ଏକ ଉଦ୍ଦେଶ୍ୟ [Purpose] ବିହୀନ ପ୍ରକୃତି ଓ ଦଇବ-ଚାଳିତ ଧାରାର ବର୍ଣ୍ଣନା ଦେଇ ଥିଲେ ||ଗଗ||

ଯେ ପର୍ଯ୍ୟନ୍ତ ସମାଜ ବ୍ୟବସ୍ଥାରେ ତ୍ରୁଟି ରହିଛି, ସେ ପର୍ଯ୍ୟନ୍ତ ପ୍ରକୃତି ବିରୁଦ୍ଧରେ ସମସ୍ତ ବିଜୟ, କେତେକ ମୁଷ୍ଟିମେୟ ଲୋକଙ୍କର

---

||ଗଗ|| The philosophers say that fire and water and earth and air all exist by nature and chance and none of them by art and that the bodies which come next in order—the earth, sun, moon and stars—have been created by means of absolutely in animato existences. The various elements are moved by chance and also by inherent forces according to cetrain affinities amongst them—of hot with cold, dry with moist, soft with hard and according to all the other accidental mixture of opposites which have of necessity happened. After this fashion has been created the whole of heavens and all that is therein as well as all animal and plants and all the seasons. These come from the elements, not by any action of mind or of any God or from art but by nature and chance alone.

[Quoted from Limitation of science—J. Sulivan, 1953, Mentor Boox, 1953, page-73.]

କ୍ଷମତା ଓ ଅତ୍ୟାଚାର ବଢ଼ାଇବାରେ ସାହାଯ୍ୟ କରିବ । ବହୁଦିନ ତଳେ ଟଲଷ୍ଟୟ ଏହି କଥା କହିଥିଲେ ||୩୪|| "ପ୍ରଗତି" ଦଇବ-ଅଧୀନ ତେଣୁ ତାକୁ ନିୟନ୍ତ୍ରଣ କରିବାକୁ ପଡ଼ିବ । ବିବର୍ତ୍ତନ ପଥରେ ଯେଉଁସବୁ "ପରିବର୍ତ୍ତନ"ର ଆବିର୍ଭାବ ହୋଇଛି ସେଗୁଡ଼ିକ ଦାୟାଦ ସୂତ୍ରରେ ପ୍ରକଟିବ ନାହିଁ । ସୁତରାଂ ପ୍ରାକୃତିକ ମନୋନୟନ ପ୍ରଣାଳୀ କାର୍ଯ୍ୟ କରିବ ନାହିଁ । ତେଣୁ ଆବଶ୍ୟକ କୃତ୍ରିମ ମନୋନୟନ । ||୩୫|| ଶାସକ ସଂପ୍ରଦାୟଙ୍କ ପ୍ରଗତିପାଇଁ ଉପଯୋଗୀ କରିବାପାଇଁ, "ଅତି ମାନବ" [Superman] ସୃଷ୍ଟି କରିବାକୁ ପଡ଼ିବ । ଶକ୍ତି ଏକ ଲକ୍ଷ୍ୟ ନୁହେଁ, ଏକ ଆୟୁଧ, ଏକ ଉପକରଣ, ଏକ ଅବଲମ୍ବନ । ଏହି ଶକ୍ତିର ସାହାଯ୍ୟରେ ହିଁ ଶକ୍ତିକୁ ଅତିକ୍ରମ କରିବାକୁ ପଡ଼ିବ —ଏହା ଦାର୍ଶନିକ ନିଟେଶ [Nietzsche],— 1844-1600] କହିଥିଲେ । ଅଭ୍ୟୁଦୟ

---

||୩୪|| "If the arrangement of society is bad (as ours is) and a small number of people have power over the majority and oppress it, every victory over Nature will inevitably serve only to increase that power and that oppression. This is what is actually happening".

It is nearly half a century since Tolstoy wrote these words and what was happening then has gone on happening eversince [Science, liberty and peace—page 5]

||୩୫|| Cowards, we defeat natural selection under cover of philanthropy, being sluggard, we neglect artificial selection under cover of delicacy and moralily.

[Man and super man-Bernard shaw page xxvi]

କାଳରେ ମଣିଷ ଧର୍ମକୁ ଅତିକ୍ରମ କରି ପହଞ୍ଚିଥିଲା ନିଜ ପାଖରେ । କିନ୍ତୁ ଏ କାଳରେ ନିଜକୁ ଅତିକ୍ରମ କରିବାର ପ୍ରଶ୍ନ ଉଠିଲା । "ଅତିମାନବ" ହିଁ ଏହା କରିବାପାଇଁ ସକ୍ଷମ ହେବ । ଏହି "ଅତିମାନବ" ଜରିଆରେ ଜୀବନର ସୃଜନଶକ୍ତି ଉନ୍ନତରେ ଗଠନ ଆକୃତି ଗଢ଼ି କରିବ । ପରି-ପୂର୍ଣ୍ଣତା ଆଡ଼କୁ ଅଗ୍ରଗତି କରିବ । "ଅତିମାନବ" ନିଜକୁ ନିଜ ବିଷୟରେ ଚେତନଶୀଳ କରାଇ ମଣିଷ ଜାତିର ପ୍ରଗତିରେ ସହାୟକ ହେବ ॥୩୬॥

ନିଜ ବିଷୟରେ ସଚେତନ ହେବା ଭାବନାର ଆବଶ୍ୟକତାରୁ ଆସିଥିଲା ଫ୍ରାନ୍‌ସିସ୍ ଗାଲ୍‌ଟନ [୧୮୨୨-୧୯୧୧]ଙ୍କ Eugenics ॥୩୭॥ ପ୍ରଗତିପାଇଁ ମଣିଷକୁ ଜାଣିବାକୁ ହେବ । ତା'ର ଅଟକଳ କେତେ ଏବଂ ସେହି ସାମର୍ଥ୍ୟର ସମ୍ଭାବନା କଅଣ ତାର ଅଟକଳ କରିବାକୁ ହେବ । ସୃଷ୍ଟିର ଅଗ୍ରଣୀ ଭାବରେ ନୁହେଁ, ଏକ ପୂର୍ଣ୍ଣ ଆଉ ସାର୍ଥକ ଭବିଷ୍ୟତ ପୁରୁଷର ଅପୂର୍ଣ୍ଣ-ପୂର୍ବପୁରୁଷ ଭାବେ ତାର ମୂଲ୍ୟାୟନ କରିବାକୁ ହେବ । ଏବଂ ଏହି ମୂଲ୍ୟାୟନରେ ପୃଷ୍ଠଭୂମିରେ

---

॥୩୬॥ In "Back to Methuselah" Life-force is struffling towards its goal of God-head by iniona-ting itself in creatures with knowledge and power enough to control nature and circumstances.

॥୩୭॥ (i) Hereditary Genius-1869 .
(ii) Inquiries in to Human Faculty and its development-1883

Eugenics ସମ୍ବନ୍ଧରେ ଆଲୋଚନାପାଇଁ Man in the Modern World-Julian Huxley, Mentor Book, 1953 "Eugenics and society" ଶୀର୍ଷକ ଅଧ୍ୟାୟ ପୃଷ୍ଠା-୬୮-୭୧ ଦ୍ରଷ୍ଟବ୍ୟ ।

ମଣିଷ ଧର୍ମ-ସଂସ୍କାର ବଦଳରେ ଏକ କମ ବକାଶ ଧାରାର ଭିତ୍ତିରେ ପ୍ରଗତ ପଥରେ ଆଗେଇ ଯିବ । "ପାପ" ଆଉ "ପୂଣ୍ୟ" ଧର୍ମତନ୍ତ୍ର ଭିତରେ ନାହିଁ । ମଣିଷର କୁ୍ୃଟି ହି "ପାପ" ଏବଂ Eugenics କରିଆରେ ଏହି କୁଟିକୁ ସୁଧାରି "ପୂଣ୍ୟ" ଅର୍ଜନ କରିବାକୁ ହେବ । "ସ୍ୱର୍ଗ" ମଣିଷର ଧେୟ ବା ଲକ୍ଷ୍ୟ ନୁହେଁ । ଏକ ପୂର୍ଣ୍ଣ ଭବିଷ୍ୟତ ପୁରୁଷର "ଅତି ମାନବ" ହିଁ ଏହାର ଲକ୍ଷ୍ୟ ।

ଏହି ଭବିଷ୍ୟତ ପୁରୁଷର ରୂପରେଖ ନିର୍ଭର କରୁଛି ବିବର୍ତ୍ତନର "ବେଗ" ଓ ଏହା ଆମକୁ କି ଐତିହ୍ୟ ଦେଇଛି, ତାରି ଉପରେ । ଧରାର ଏଇ ବିବର୍ତ୍ତନ କାହାଣୀକୁ ମୋଟାମୋଟି ତିନୋଟି ପର୍ଯ୍ୟାୟରେ ବିଭକ୍ତ କରାଯାଇପାରେ । ଅଜୈବ, ଜୈବ ଓ ମାନବିକ ।।୩୮।। ପ୍ରତ୍ୟେକ ପର୍ଯ୍ୟାୟ ଗୁଣାତ୍ମକ ଭାବେ ଅନ୍ୟ ପର୍ଯ୍ୟାୟଠାରୁ ପୃଥକ । ପ୍ରତ୍ୟେକ ପର୍ଯ୍ୟାୟରେ ପରିବର୍ତ୍ତିରେ ବେଗ ଓ ପ୍ରଣାଳୀ, ସଙ୍ଗଠନରେ ସ୍ତର ଓ ପରିଣତି ପୃଥକ । ଅଜୈବ ବିବର୍ତ୍ତନ କାହାଣୀ ମଧ୍ୟରେ ଗ୍ରହ, ଉପଗ୍ରହ, ସୌରମଣ୍ଡଳ' ତାରକାମଣ୍ଡଳୀ, ଗାଲକ୍ସି, ନେବୁଲ ଇତ୍ୟାଦି ପୁଣି ମୌଳିକ ଓ ଯୌଗିକ ବସ୍ତୁ ଗୁଡ଼ିକର ସୃଷ୍ଟି ଅନୁସରଣ କରାଯାଇପାରେ ।।୩୯।।

।।୩୮ ।। Inorganic, Organic, Human or Psycho-social.

।।୩୯।। ସୃଷ୍ଟି ସମ୍ବନ୍ଧୀୟ ଧାରଣା ପ୍ଲାଟୋ [Timaeus], ଆଲେକ୍-ଜାଣ୍ଡ୍ରିଆର ଫିଲୋ, ପ୍ଲୋଟିନସ୍ [ଖ୍ରୀ: ଅ ୨୦୪-୨୭୦], ସେଣ୍ଟ ଅଗଷ୍ଟାଇନ୍ ଆଭେରୋସ୍ ଇବନରସଦ୍ [ଖ୍ରୀ: ଅ ୧୧୨୬-୧୧୯୮], ମଇମୋନାଇଡ୍ସ୍, ସେଣ୍ଟ ଥୋମାସ୍ ଆକ୍ୱିନାସ୍ [ଖ୍ରୀ: ଅ ୧୨୨୫ ବା ୧୨୨୬-୧୨୭୪], ଉଇଲ୍-ଅମ୍ ଅଫ ଓକାମ୍, ଲାଇବ୍ନିଜ୍ [୧୬୪୬-୧୭୧୬], ପ୍ରଭୃତିଙ୍କ ଲେଖା ମଧ୍ୟରେ ଦେଖିବାକୁ ମିଳେ ।

ଜୈବିକ ବିବର୍ତ୍ତନ ପର୍ଯ୍ୟାୟର ପରିଣତି ଦେଖିଲୁ ଡାରଉଇନ୍‌ଙ୍କ ମତବାଦ ମଧ୍ୟରେ । ଜୀବାଣୁରୁ ବ୍ରହ୍ମ ପର୍ଯ୍ୟନ୍ତ । ସବୁଠାରୁ ନିମ୍ନସ୍ତରର ଜୀବାରୁ ମଣିଷ ପର୍ଯ୍ୟନ୍ତ । ଏହି ପର୍ଯ୍ୟାୟରେ ଦେଖିଲୁ ତେତିଶ କୋଟି ଦେବତା ବଦଳରେ ଛପନକୋଟି ଜୀବ । ସଙ୍ଗଠନର ଅଦ୍ଭୁତ ସମ୍ଭାବନା । ଆହୁରି ଦେଖିବାକୁ ପାଇଲୁ ଶାରୀରିକ ସଙ୍ଗଠନର ପ୍ରଚୁର ସମ୍ଭାବନାର ବିକାଶ— ପଞ୍ଚ ଇନ୍ଦ୍ରିୟର ବିକାଶ, ଜଳ ଓ ସ୍ଥଳ ମଧ୍ୟସ୍ଥ ଜୀବମାନଙ୍କର ଆକାର ଓ ଗଠନର ବିକାଶ, ସ୍ନାୟବିକ ଗଠନ, ମସ୍ତିଷ୍କର ଗଠନ ଓ ପ୍ରବୃତ୍ତି [Instinct] ଗୁଡ଼ିକର ବିକାଶ ଇତ୍ୟାଦି । ପୁଣି ଏଇ ପର୍ଯ୍ୟାୟରେ ଦେଖିଲୁ, ପ୍ରତ୍ୟେକ ଶ୍ରେଣୀର ଜୀବ ବିବର୍ତ୍ତନର ପାହାଚରେ ଏକ ପ୍ରକାର ସ୍ଥିରତା ବା ସ୍ଥିରସାମ୍ୟ ଅବସ୍ଥାରେ ପହଞ୍ଚି ଯାଇଛନ୍ତି । ମାନବିକ-ବିବର୍ତ୍ତନ, ଅଭ୍ୟୁତ୍ଥାନ କଥାର ନୂତନ ଓ ତୃତୀୟ ପର୍ଯ୍ୟାୟ । ଏହି ତୃତୀୟ ପର୍ଯ୍ୟାୟକୁ ବିବର୍ତ୍ତନର ସାମାଜିକ-ମନସ୍ତାତ୍ତ୍ୱିକ [Psycho-Social] ପର୍ଯ୍ୟାୟ ବୋଲି ମଧ୍ୟ କୁହାଯାଇପାରେ ।

ବିବର୍ତ୍ତନର ପ୍ରାଙ୍ଗଣରେ ମଣିଷର ଆବିର୍ଭାବ ପରେ ଦେଖିବାକୁ ପାଇଲୁ ଏହାର ପ୍ରଣାଳୀ, ସଗଠନ ଓ ପରିଣତିର ଏକ ମୌଳିକ ଆଉ ଗୁଣାତ୍ମକ ପରିବର୍ତ୍ତନ । ଆଗରୁ ଜୀବ ପ୍ରକୃତି ଆଡ଼େ କେବଳ "ଚାହିଁଥିଲା" । କିନ୍ତୁ ମଣିଷ ପ୍ରକୃତିକୁ ପ୍ରଥମ କରି "ଦେଖିଲା", ଦେଖିବାକୁ ଆରମ୍ଭ କଲା । ଆଗରୁ ଜୀବ ଥିଲା ପ୍ରକୃତିର ଦାସ । କିନ୍ତୁ ମଣିଷ ଚକ ଗଢ଼ାଇ ଦେଲା, ଅଖ ଗଢ଼ାଇ ଦେଲା ଓ ପଇକୁ ବୁଲାଇ ଦେଲା । ସେ ହେଲା ପ୍ରକୃତିର ପ୍ରଭୁ । ପ୍ରକୃତି ହେଲା ମଣିଷର ଦାସ । ଆଗରୁ ଜୀବ ରସାୟନ ବିଜ୍ଞାନ, ପଦାର୍ଥ ବିଜ୍ଞାନ ବା ଜୀବନ ବିଜ୍ଞାନର କେତେକ ନିୟମର ଅଧୀନ ଥିଲା । ସେହି ନିୟମ ଗୁଡ଼ିକ ଦ୍ୱାରା ସେ

---

ଏ ସମ୍ବନ୍ଧୀୟ ଧାରଣା ମଧ୍ୟ ବୈଜ୍ଞାନିକ ବୁଫନ୍, କାଣ୍ଟ, ଲାପ୍‌ଲେସ୍, ଉଇଜସାକର, କୁଇପର, ହୋଏଲ୍, ବାଦେ, ମାକ୍‌ସୱେଲ, ଲେମେଟାର, ଗାମୋ, ଗ୍ରୀମ୍‌ବଲେନ୍, ମୋଲଟନ୍, ଜେମ୍‌ସ ଜିନ୍‌ସ୍ ପ୍ରଭୃତିଙ୍କ ତତ୍ତ୍ୱ ମଧ୍ୟରେ ଦେଖିବାକୁ ମିଳେ ।

ସେ ସର୍ବତୋଭାବେ ନିୟନ୍ତ୍ରିତ ହେଉଥିଲା । କିନ୍ତୁ ମଣିଷପାଇଁ ସେହି ନିୟମ-ଗୁଡ଼ିକ ଆଉ ସୀମା ସରହଦ ଟାଣି ପାରିଲା ନାହିଁ । "ଜୀବ"ର ସଂଗ୍ରାମ ଥିଲା ବାହାରର ପ୍ରକୃତି ଓ ପଶୁ ବିରୁଦ୍ଧରେ । କିନ୍ତୁ ମଣିଷ ପକ୍ଷରେ ସେ ସମସ୍ୟା ଗୌଣ ହୋଇଥିଲା । ମଣିଷର ସମସ୍ୟା ହେଲା ନିଜ ଭିତରର ପ୍ରକୃତି ଆଉ ପଶୁ ବିରୁଦ୍ଧରେ ଲଢ଼ିବାର ସମସ୍ୟା । ଏହି ରୂପେ ବିବର୍ତ୍ତନର ଧାରା ମଧ୍ୟରେ ମଣିଷର ପ୍ରକୃତି-ଦାସତ୍ୱ ଆଉ ପଶୁ-ଦାସତ୍ୱ ତିରୋହିତ ହୋଇଗଲା ||୮୦||

---

||୮୦|| The new being, Man, changes his master. He escapes from the grasp of Physico-chemical and biological laws. XXXX. He looks at the universe as before, but he now sees it [page 93].

Upto the birth of conscience, the being who was to become man only differed from his ance-xtors, morphologically. He was subject to the laws of nature, to the laws of evolution, he had to obey XXXX. Henceforth, contrary to all others, in order to evolve, he must no longer obey nature. [page 82]

The animal struggle against nature, against the elements, and against the enemy, the struggle for Life, from which the human form finally emerged after ten million centuries, is transformed into a struggle of Man against the remains of the animal within him. But from now on, because of his conscience, it is the individual alone who counts and no longer the species. [page 87]

Human Destiny—Le comte du Nouy, Signet Books, 1949.

ଅଭ୍ୟୁତ୍‌ଥାନ-ପଥରେ "ଜୀବ" "ବ୍ୟବହାର"ର ନେତେକ ନିର୍ଦ୍ଦିଷ୍ଟ ପ୍ରଣାଳୀର ଅଧିକାରୀ ହୋଇଥିଲ ।।୪୧।। କିନ୍ତୁ କ୍ରମେ ଏହି ପ୍ରଣାଳୀ ଗୁଡ଼ିକର ଉପଯୋଗିତା କମି କମି ଗଲା । ବିବର୍ତ୍ତନର ସୋପାନରେ ଜୀବର ଗଠନରେ ଯେତେ ଉନ୍ନତ ସାଧିତ ହୋଇଛି, ଯେତେ ଅଗ୍ରଗତ ହୋଇଛି, କ୍ରମେ ସେତେ ଉକ୍ତ ନିର୍ଦ୍ଦିଷ୍ଟ ପ୍ରଣାଳୀ ଗୁଡ଼ିକର ଉପଯୋଗିତା କମି କମି ଯାଇଛି ଓ ଜୀବର ନିଜସ୍ୱ ଅଭିଜ୍ଞତା ଓ ପରିସ୍ଥିତିର ପ୍ରଭାବ ଅଧିକରୁ ଅଧିକ ଅନୁଭୂତ ହୋଇଛି । ତା ସାଙ୍ଗକୁ ମଣିଷର ସ୍ନାୟବିକ ଗଠନ ଏହି ଅଭିଜ୍ଞତା ଆହରଣ କରିବାର ପରିସୀମା ଟାଣି ଦେଇଛି । ସେ କ'ଣ ଦେଖିବ, କ'ଣ ଶୁଣିବ, କ'ଣ ଅନୁଭବ କରିବ, କି ସ୍ୱାଦୁ ଅନୁଭବ କରିବ ଓ କେଉଁ ଗନ୍ଧ ବାରି ପାରିବ, ତାହା ତା'ର ପଞ୍ଚ ଇନ୍ଦ୍ରିୟର କ୍ଷମତା ଓ ତାର ସ୍ନାୟବିକ ଗଠନଦ୍ୱାରା ସୀମାବଦ୍ଧ । ଇନ୍ଦ୍ରିୟ ଅନୁଭୂତିର ଗୁଣ ଓ ପରିମାଣ, ମଣିଷର ଗଠନଦ୍ୱାରା ସୀମିତ । ଶବ୍ଦ, ରସ, ରୂପ, ଗନ୍ଧ ଜନିତ ଅନୁଭୂତିର ବୈଚିତ୍ର୍ୟ ଉପରେ ମଣିଷର ନିଜସ୍ୱ ଗଠନ ଟାଣି ଦେଇଛି ପରିସୀମା । ପୁଣି ମସ୍ତିଷ୍କର ଗଠନଦ୍ୱାରା ମଣିଷର ଚିନ୍ତା କରିବାର ଶକ୍ତି, ଅନୁଶୀଳନ କରିବାର କ୍ଷମତା, ଶିକ୍ଷା କରିବାର କ୍ଷମତା ବି ସୀମିତ । ସେହିପରି ସଂବେଦନା, ପ୍ରବଣତା, କ୍ଷୁଧା, ତୃଷା, ପ୍ରାବୃତ୍ତିକ ଜୀବନ, ସ୍ମୃତି, ଶିକ୍ଷା ଇତ୍ୟାଦି ବିବର୍ତ୍ତନ କ୍ରମରେ ମଣିଷ ପାଖକୁ ଆସିଛି ।।୪୨।। ସେହିପରି ଆସିଛି "ଇଚ୍ଛା" ଆଉ "ପରମ୍ପରା" । ପ୍ରଥମଟି ଏକ

---

।।୪୧।। Species—specific behaviour Patterns or Fixed Action Pattern [FAP].

FAP ଦୁଇ ପ୍ରକାର—Taxis [Plural-Taxes ଓ Kineses । ଏହା Sign Stimuli ଓ Intention Stimuli ଦ୍ୱାରା ନିୟନ୍ତ୍ରଣଶୀଳ ହୁଏ ।

।।୪୨।। Thus, the capacities for thinking, Pecreption, emotion, hunger, thirst, sexual behaviour, memory, learning and so on are given by our evolutionary heritage. But these capacities are only

ପ୍ରଶାକ ଧର୍ମକୁ ଆଶ୍ରୟକରି ଯୋଗାଯୋଗ ଓ ଚିନ୍ତା ପରସ୍ପରକୁ ସୀମାହୀନ ଭାବେ ବୃଦ୍ଧି ଓ ପରିବ୍ୟାପ୍ତ କରିବାର ଧାରା । ସ୍ୱୀକୃତି ଜାତିର ସାମୂହିକ ଅଭିଜ୍ଞତା, ଅଭିଯୋଜନା ଓ ଆକାଂକ୍ଷାର ଭାବ ବହନକାରୀ ଏକ ମାଧ୍ୟମ ।

"ଭାଷା" ଆଉ "ପରମ୍ପରା" ବିବର୍ତ୍ତନର ନୂତନ ସୂର । ଏହା ମଣିଷ ମଧ୍ୟରେ ନୂତନ ରିଫ୍ଲେକ୍ସ ସୃଷ୍ଟି କରେ । ନୂତନ ଗୁଣ ଗୁଡ଼ିକ ବଂଶ-କୂଟର ନିଗୂଢ଼ ତନ୍ତ୍ରର ପ୍ରହେଳିକା ମଧ୍ୟରେ ପ୍ରଜନନ ସୂତ୍ରରେ ଆଉ ପ୍ରକଟିତ ହେବାର ଆବଶ୍ୟକତା ନାହିଁ । "ଭାଷା" ଓ "ପରମ୍ପରା" ହିଁ ନୂତନ ପ୍ରଜନନ ସୂତ୍ର । ନୂତନ ବଂଶକୂଟ ।

ସୁତରାଂ ସଂସ୍କୃତି, ବିବର୍ତ୍ତନର ନୂତନ ପର୍ଯ୍ୟାୟରେ ସବୁଠାରୁ ଗୁରୁତ୍ୱ-ପୂର୍ଣ୍ଣ ଆୟୁଧ । ପୁରାତନ ପ୍ରସ୍ତର ଯୁଗଠାରୁ ଆଜିପର୍ଯ୍ୟନ୍ତ ମଣିଷର ଶାରୀରିକ ଗଠନ-ରୂପ ଓ ମାନସିକ ଗଠନରୂପରେ ଖୁବ୍ କମ ପରିବର୍ତ୍ତନ ହୋଇଛି ବୋଲି ନିଃସନ୍ଦେହରେ କୁହାଯାଇପାରେ । କିନ୍ତୁ ତାର ସଂସ୍କୃତିରେ ପ୍ରଭୂତ ପରିବର୍ତ୍ତନ ସାଧିତ ହୋଇଛି । ପୁଣି ଐତିହାସିକ କାଳ ମଧ୍ୟରେ ବିଚାର କଲେ ପରିବର୍ତ୍ତନର ହାର ବା ବେଗ କ୍ରମଶଃ ଅଧିକରୁ ଅଧିକ ହେଉଛି ବୋଲି ମଧ୍ୟ ନିଃସନ୍ଦେହରେ କୁହାଯାଇପାରେ । ଏହାର କାରଣ ହେଲା, ପରମ୍ପରା ସୂତ୍ରରେ ଯେଉଁ ଅନୁଭୂତି ସକଳର କୂଟ ଉତ୍ତରପୁରୁଷମାନଙ୍କ ପାଖକୁ ପ୍ରବାହିତ ହେଉଛି ତାହା ସାମଗ୍ରିକ । ଅର୍ଥାତ୍ ଏକ ନିର୍ଦ୍ଦିଷ୍ଟ କାଳରେ ତତ୍‌-ପୂର୍ବବର୍ତ୍ତୀ ସମସ୍ତ ଅନୁଭୂତ ପରମ୍ପରା ସୂତ୍ରରେ ଉତ୍ତରପୁରୁଷମାନଙ୍କ ପାଖକୁ ପ୍ରବାହିତ ହେଉଛି । ଜୈବିକ ବିବର୍ତ୍ତନର ଗତିକୁ ଯଦି ସମାନ୍ତର ପ୍ରଗତି [Arithmetical Progression] ସହ ତୁଳନା କରାଯାଏ, ତେବେ ପରମ୍ପରା ବା ସଂସ୍କୃତି-ଘଟିତ ବିବର୍ତ୍ତନକୁ ଗୁଣୋତ୍ତର ପ୍ରଗତି [Geometric Progression]

---

Potentials; they are fulfilled and modified by environmental influence.

[Introduction to Psychology— Morgan and King TMH Edition, 1975— page 37]

ନୁହେଁ, ବରଂ Logarithmic Progression ସହ ତୁଳନା କରିଯାଇ-ପାରେ ॥୪୩॥

---

॥୪୩॥ Speech and tradition manufacture conditioned reflexes in a few years and these reflexes no longer need to be transformed into hereditary characters. This last transformation takes a very long time, while with the help of speech, everything takes place as if all the acquisitions due to experience became hereditary immediately.

[Human Destiny—Nouy, page 90-91]

By means of spoken and still more effectively of written language, man can do what is possible to no other organism, namely transmit the results of experience to later generations and do so cumulatively. This constitues a second mechanism of inheritance, in addition to that of biological genetics. What this exclusively human mechanism transmits is not a system of material units as in biological inheritance, but a system of knowledge, ideas and attitudes. We may sum up the essential difference between the three sectors of evolution by saying that whereas evolution in the biological sector depends on its new property of self-reproduction of matter, in Psychological evolution it depends on the self-reproduction of mind.

[What is Science ? —Editor James R. Newman, Wasington Square Press, N. Y. 1961, Article by Julian Huxley on "Evolution and Genetics" [Pages 271-306].

ଜୈବିକ ବିବର୍ତ୍ତନରେ ନିର୍ଦ୍ଦିଷ୍ଟ "ପରିବର୍ତ୍ତନ" ଗୁଡ଼ିକ କେବଳ ଏକ ନିର୍ଦ୍ଦିଷ୍ଟ "ଜାତି" [Species] ମଧ୍ୟରେ ସୀମାବଦ୍ଧ ହୋଇ ରହିଥାଏ । ଅନ୍ୟ ଏକ ଭିନ୍ନ ଜାତି (Species) ମଧ୍ୟରେ ତାହା ପ୍ରକଟିତ ହୋଇପାରେ ନାହିଁ । "ପରିବର୍ତ୍ତନ"ର ପ୍ରକୃତି ଏପରି ଯେ ବିବର୍ତ୍ତନର ପାହାଚରେ ତାହା ଏକ ନିର୍ଦ୍ଦିଷ୍ଟ ପର୍ଯ୍ୟାୟର ଜୀବ [Biological Type]କୁ ବହୁ ଆକାରରେ ବିବିଧ ଭାବରେ [Order, Families, Genera and Species] ପରିବର୍ତ୍ତିତ କରାଇଛି । ଏହାକୁ Divergence ବା Dispersal କୁହାଯାଏ । ଏହି ପରିବର୍ତ୍ତନ ପ୍ରକ୍ରିୟା ଜୈବିକ ବିବର୍ତ୍ତନରେ ପ୍ରାକୃତିକ ମନୋନୟନର ବିଶେଷ କ୍ରିୟାଶୀଳତାଦ୍ୱାରା କାର୍ଯ୍ୟ କରୁଛି । ଏହା ଏକ ପ୍ରକାରର ଅନ୍ଧ ବିଶେଷ—ପରୀକ୍ଷା କାର୍ଯ୍ୟ କରିବାର ପ୍ରଣାଳୀ । ଏହା ସହ ତୁଳନାତ୍ମକ ଭାବେ ସମୀକ୍ଷା କଲେ ବିବର୍ତ୍ତନର ଆଧୁନିକ ଧାରାରେ ସମ୍ପୂର୍ଣ୍ଣ ନୂତନ ଏକ କ୍ରିୟାଶୀଳତା ଦୃଷ୍ଟିଗୋଚର ହୁଏ । ଏହି ନୂତନ ଧାରା ମଧ୍ୟରେ ଆମେ ଦେଖିବାକୁ ପାଉ ଏକ ସମ୍ପୂର୍ଣ୍ଣ ନୂତନ ଚିତ୍ର । ଏଠି "ପରିବର୍ତ୍ତନ" କୌଣସି ଏକ ନିର୍ଦ୍ଦିଷ୍ଟ ଜାତି [Species] ମଧ୍ୟରେ ସୀମାବଦ୍ଧ ନୁହେଁ । ଏହାର ପ୍ରଭାବ ସମଗ୍ର ମାନବଜାତି ମଧ୍ୟରେ ପ୍ରକଟିତ ହେଉଛି [Diffusion] । ଏହାର କାରଣ ହେଲା, ବିବର୍ତ୍ତନର ପ୍ରାଥମିକ ଯୁଗରେ Homo Sapiens ମଧ୍ୟରେ କେତେକ ପୃଥକ୍ ଜାତି ଦୃଷ୍ଟିଗୋଚର ହୋଇଥିଲେ-ହେଁ, ପରମ୍ପରା ଓ ସଂସ୍କୃତିର ପ୍ରଭାବରେ ଏହା କ୍ରମେ ଏକ ଜାତି [Species]ରେ ପରିଣତ ହୋଇଛି [Convergence] । ନୂତନ ଜାତି ବଦଳରେ ଆମେ ବର୍ତ୍ତମାନ ଦେଖିବାକୁ ପାଉଛୁ ନୂତନ ନୂତନ ସାଂସ୍କୃତିକ ଜାତି [Culture Species] ||୪୪|| ଏହାଛଡ଼ା ନୂତନ ବିବର୍ତ୍ତନ ଧାରାର

||୪୪|| To the zoologist, the species is the unit, to the anthropologist the unit is the culture. In other words, the zoologist with specific instinctive behaviour, the anthropologist with a culturally fashioned habit response.

ସବୁଠାରୁ ଉଲ୍ଲେଖଯୋଗ୍ୟ ଓ ଗୁରୁତ୍ୱପୂର୍ଣ୍ଣ ବିପ୍ଳବ ହେଲା ଏହାର କ୍ରିୟାଶୀଳତାରେ ଏକ "ଦିଗ" ନିର୍ଦ୍ଦେଶ । ଏହି କ୍ରିୟାଶୀଳତାରେ ଆମେ ସର୍ବ ପ୍ରଥମ ଥର ପାଇଁ ପାଉଛୁ ଚେତନାଶୀଳ ଭାବେ "ଉଦ୍ଦେଶ୍ୟ"ର ସଂଯୋଜନା ବା ଆବିର୍ଭାବ ।।୪୫।।

ଆଧୁନିକ ବିବର୍ତ୍ତନର ଏହି ଧାରା, ଦୁଇଟି କାର୍ଯ୍ୟକାରକ ଉପରେ ନିର୍ଭର କରୁଛି । ପ୍ରଥମଟି ହେଲା--ଅଭିଜ୍ଞତା ଆହରଣ କରିବା ପ୍ରଣାଳୀରେ ଅଗ୍ରଗତି ଓ ଉନ୍ନତି । ଆଧୁନିକ ଯୁଗରେ, ବିଜ୍ଞାନର ପ୍ରଣାଳୀ ଏବଂ ଜୀବନର ବିଭିନ୍ନ ବିଷୟପ୍ରତି ଏହି ବୈଜ୍ଞାନିକ ପ୍ରଣାଳୀ ପ୍ରୟୋଗ କରିବାର ଉତ୍କର୍ଷତା ବା କୁଶଳତାକୁ ଏହି ପ୍ରଣାଳୀ ଭାବରେ ଚିହ୍ନିତ କରାଯାଇ-ପାରେ । ଦ୍ୱିତୀୟ କାରକ ହେଲା—ଆହରଣ କରି ଯାଇଥିବା ଅନୁଭୂତି-ଗୁଡ଼ିକ ପୂର୍ବ ପୁରୁଷମାନଙ୍କଠାରୁ ଉତ୍ତର ପୁରୁଷମାନଙ୍କୁ ପ୍ରବାହିତ କରିବା

---

[Sex and Repression in Savage Society--Bronislaw Malinowski—Edited by C. K. Ogden, Routledge andKegal Paul, N. Y., 1979, page 194]

।।୪୫।। Biological evolution, though it often displays direction, is directed from behind, by the blind and automatic forces of natural selection : Psychological evolution can be, to a lesser or greater extent, directed from in front, by the anticipatory force of conscious purpose . [What is Science ? —page 305]

ପ୍ରଣାଳୀରେ ଅଗ୍ରଗତି ଓ ଉନ୍ନତ । "ଲେଖା"ର ଉଦ୍ଭାବନ, ଛାପାଖାନାର ଉଦ୍ଭାବନ ପ୍ରଭୃତି ଏହାର ଉଦାହରଣ ॥୪୬॥

ପ୍ରାକ୍ ସଂସ୍କୃତ ଅବସ୍ଥାରେ ସାମାଜିକ ଅନୁଷ୍ଠାନ, ଧର୍ମ, ମତ ଇତ୍ୟାଦିକୁ ପ୍ରସାରିତ କରିବାପାଇଁ କୌଣସି ମାଧ୍ୟମ ନ ଥାଏ । ଅନୁଷ୍ଠାନ ଗୁଡ଼ିକର ଧାରାବାହିକତା ଓ ଅବିଚ୍ଛିନ୍ନତା ରକ୍ଷା କରିବାପାଇଁ ଏବଂ ସେ-ଗୁଡ଼ିକ ସଂରକ୍ଷଣ କରିବାପାଇଁ କୌଣସି ବାହକ-ଦ୍ରବ୍ୟର ଧାରା-ପରମ୍ପରା ନ ଥାଏ ବା ସୃଷ୍ଟି ହୋଇ ନଥାଏ । ଅନୁଷ୍ଠାନ ଓ ପରମ୍ପରା-ଏ ଦୁଇଟି ସଂସ୍କୃତିରୁ ଉଦ୍ଭବ ଓ ତାର ମାଧ୍ୟମ ବା ବାହକ ରୂପେ କାର୍ଯ୍ୟ କରେ । ତାହା ଆମେ ମଣିଷର ବୈଷୟିକ ଓ ମାନସିକ ସୃଷ୍ଟି [Material and psychic artefacts] ରୂପରେ, ଉପକରଣ ଜଣଆରେ, ଅନୁଷ୍ଠାନ ଜରିଆରେ । ସଂସ୍କୃତିର ଏଇ ପରିପ୍ରକାଶ ରୂପ ପାଏ ମଣିଷର ପଶୁ ପ୍ରବୃତ୍ତିର ମୂଳଦୁଆରେ ଏକ ମୌଳିକ ପରିବର୍ତ୍ତନ ଆକାରରେ । ପଶୁ ପ୍ରବୃତ୍ତି ଆଉ ପ୍ରବୃତ୍ତି ହୋଇ ରହେ ନାହିଁ । ପ୍ରତିକ୍ରିୟା ଆଉ କେବଳ

---

॥୪୬॥ This acceleration of cultural evolution obviously depends on two main factors—improvements in the method of acquisition of new experience, and improvements in the mechanism of transmission of experience once acquired. The invention of writing and later of printing are examples of the second, while the use of the scientific method and its application to an ever widening range of subjects are examples of the first.

[What is science ? —page 302]

ଜୈବିକ ପ୍ରତିକ୍ରିୟା ହୋଇ ରହେ ନାହିଁ । ପ୍ରବୃତ୍ତି ରୂପାନ୍ତରିତ ହୁଏ କେତେକ ପ୍ରବଣତା ରୂପରେ । ଉଦ୍ଦୀପନାର ପ୍ରତିକ୍ରିୟା କେବଳ ଜୈବିକ ନ ହୋଇ, ସମାଜ, ମନସ୍ତତ୍ତ୍ୱ, ଓ ସଂସ୍କୃତି-ଭିତ୍ତିକ ହୋଇଯାଏ ।।୪୭।।

---

।।୪୭।। x x In a precultural condition there is no medium, in which social institutions, morals and religion can be moulded; there is no memory mechanism by which to maintain transmit the institutions after they have been established. [page 179]

The fact is that the essential foundation of culture lies in a deep modification of innate endowment in which most instincts disappear, and are replaced by plastic though directed tendencies which can be moulded into cultural responses. [page 191-192]

X X there is purely, no biological release in man, but instead there is a combined psychological and physiological process determined in its temporal, spatial and formal nature by cultural tradition, associated with it and supplementing it is a system of cultural taboos X X [p 197]

X X a social taboo does not derive its force from instinct, but that instead it always has to work against some innate impulse [p 199]

ଆଧୁନିକ ବିବର୍ତ୍ତନରେ କାର୍ଯ୍ୟକାରୀ ପ୍ରଣାଳୀକୁ ପ୍ରସ୍ତାବିତ କରୁଥିବା ଏହି କାର୍ଯ୍ୟକାରକର ତାତ୍ପର୍ଯ୍ୟ ଉତ୍ତମ ରୂପେ ଅବଧାରଣା କରିବାକୁ ପଡ଼ିବ । ଅନୁଭୂତ ଆହରଣ ପ୍ରଣାଳୀକୁ ବ୍ୟବହୃତ କରିବା ଓ ଆହରଣ କରାଯାଇଥିବା ଅନୁଭୂତକୁ ଉତ୍ତରପୁରୁଷମାନଙ୍କ ପାଖରେ ପହଞ୍ଚାଇବା ପ୍ରଣାଳୀକୁ ବ୍ୟବହୃତ କରିବା—ଏହି ଦୁଇଟି ପ୍ରଣାଳୀର କ୍ରିୟାଶୀଳତା ଉପରେ ନିର୍ଭର କରୁଛି ଆଧୁନିକ ବିବର୍ତ୍ତନ । ଅନ୍ୟ କଥାରେ ଯେଉଁସବୁ ଉଦ୍ଭାବନ ବା ଆବିଷ୍କାର ପ୍ରତ୍ୟକ୍ଷ ବା ପରୋକ୍ଷ ଭାବେ ଜୈବିକ ବିବର୍ତ୍ତନରେ ପ୍ରାକୃତିକ ମନୋନୟନ ପ୍ରଣାଳୀର ବିକଳ୍ପ ଭାବେ କାର୍ଯ୍ୟ କରୁଛି ସେହି ସବୁ ଉଦ୍ଭାବନ ବା ଆବିଷ୍କାର ଆଣିଛି ନୂତନ ଦ୍ୟୋତନା, ନୂତନ ଦିଗନ୍ତ ଆଉ ନୂତନ ଅବବୋଧ । ଏହାହିଁ ଆଧୁନିକ ବିବର୍ତ୍ତନ ଆଉ ଆଧୁନିକ ଅବବୋଧର ଅନ୍ୟତମ ବିପ୍ଳବ ।

ଏ ବିପ୍ଳବକୁ ଅନ୍ୟ କଥାରେ "ବିକାଶର ସମ୍ଭାବନା ଚରିତାର୍ଥ" କରିବାର ପ୍ରବଣତା କୁହାଯାଇପାରେ । ଜୈବିକ ବିବର୍ତ୍ତନର କାହାଣୀ

---

The plasticity of instinctive tendencies is the condition of cultural advance. [p 216]

X X in humanity instinct had to become plastic and innate responses have to be transformed into attitudes or sentiments [p 241]

The forces of repression are the forces of sentiment itself. They come from the principle of consistency which every sentiment requires in order to be useful in social behaviour. [p 242]

[sex and Repression savage society-Bronislaw Malinowski]

ମଧ୍ୟରେ ଆମେ ଦେଖୁ ସେଇ ସମ୍ଭାବନା ଚରିତାର୍ଥ କରିବାର ପ୍ରବଣତା । ବିବର୍ତ୍ତନର ନୂତନ ଧାରା ମଧ୍ୟରେ ମଧ୍ୟ ସେଇ କଥା—ବିକାଶର ନୂତନ ଓ ଉଚ୍ଚତର ସମ୍ଭାବନା ଚରିତାର୍ଥ କରିବାର ଏକ ପ୍ରବାହ, ଏକ ପ୍ରବଣତା । ହକ୍ସଲେଙ୍କ ଭାଷାରେ ଏହାହିଁ ସଚେତନ ବିବର୍ତ୍ତନ । ମଣିଷ ମଧ୍ୟରେ ବିବର୍ତ୍ତନର ଧାରା ପ୍ରଥମଥର ପାଇଁ ସଚେତନ ଭାବେ କ୍ରିୟାଶୀଳ ହୋଇଛି । ଚେତନଶୀଳ ଭାବେ ନିଜକୁ ପ୍ରକାଶ କରୁଛି । ଏହାକୁ "ପାପକ" "ଜୀବକ" "ପଦ୍ମଲୋଚନ" "ଦୟାସାଗର"—ଯାହା କିଛି କୁହାଯାଇ-ପାରେ । —ନା ଏହାକୁ ଉଦ୍ଦେଶ୍ୟ, "ସୃଜନଶକ୍ତି", Impulse. Orthogenesis, Entelchy Telefinality, Elanvital ବା ଯାହାକିଛି କୁହାଯାଇପାରେ ॥୪୮॥

---

॥୪୮॥ When we survey the biological panarama as a whole, we see that evolution is from one point of view, the realisation of the possibilities of living substacne; evolutionary advance and progress involve the successive realisation of new possibilities. xxxx some time during the late Cenozoic x x all the purely material or physical possibilities of life had been actualised and had reached the upper limit of realisation. [page 300]. xxxx One major avenue of advance, however, remained—the further realisation of mental possibilities. It was this direction which was taken by our earliest hominid ancestors and led to the emergence of our species as the latest dominant type of evolution [page 301]. xxxx

## ମନ-ଗହ୍ୱରର କଥା

[ଫ୍ରଏଡ଼ଙ୍କ ତତ୍ତ୍ୱ]

[ତିନି]

ନୂତନ ଦିଗନ୍ତ ଦେଖିଥିଲୁ ମଣିଷର ଅଭ୍ୟୁଥାନ କଥାର ଗାଥା ମଧ୍ୟରେ—ଏକ ଜାଗତିକ ଧାରାର ମହିମା ତତ୍ତ୍ୱ ମଧ୍ୟରେ । ଏହି ଧାରାର ଦୁଇଟି ଉଲ୍ଲେଖ ଯୋଗ୍ୟ ଓ ଗୁରୁତ୍ୱପୂର୍ଣ୍ଣ ଐତିହ୍ୟ ଥିଲା, ମସ୍ତିଷ୍କର ଗଠନ ଓ ମଣିଷର ମନ । ମଣିଷର ସେଇ ମନ-ମନ୍ଧର ଭିତରେ ପାଇଲୁ ଅଣିମା ତତ୍ତ୍ୱ, ନୂତନ ମୂର୍ତ୍ତି ଓ ସ୍ଥାପତ୍ୟ—ପରବର୍ତ୍ତୀ ଦିଗନ୍ତର ସନ୍ଧାନ ।

ଊନବିଂଶ ଶତାବ୍ଦୀର ଦ୍ୱିତୀୟ ଭାଗ ବେଳକୁ "ମନୋବିଜ୍ଞାନ" କ୍ଷେତ୍ରରେ ପ୍ରଭୂତ ପରିବର୍ତ୍ତନ ସାଧିତ ହୋଇଥିଲା । ଏହି କାଳରେ "ମନୋବିଜ୍ଞାନ"କୁ "ଚେତନାର ମନସ୍ତତ୍ତ୍ୱ" [Psychology of consciousness] ରୂପରେ ଅଧ୍ୟୟନ କରିବାର ଦୃଷ୍ଟିଭଙ୍ଗୀ ପ୍ରବର୍ତ୍ତିତ ହୋଇଥିଲା । ସେ କାଳରେ ଏହି ନୂତନ ମନୋବିଜ୍ଞାନକୁ Physiological Psychology ମଧ୍ୟ କୁହାଯାଉଥିଲା ।

---

||୪୮|| Evolution can be envisaged as a progressive realisation of intrinsic possibilities. Man is the latest dominant in biological evolution, and the first [and uptill now the only] dominant type in psychological evolution. His destiny is to act as the agent of the evolutionary process on this planet, by enabling it to realise new and highe possibilities. [page 305]. xxxx With the advent

ଏହା ପୂର୍ବରୁ ମାର୍ଶାଲ ହଲ୍ (୧୭୯୦-୧୮୫୭)ଙ୍କ ରିଫ୍ଲେକ୍ସ [Reflex] ତତ୍ତ୍ୱ ସ୍ୱୀକୃତ ହୋଇ ଯାଇଥିଲା । ରିଫ୍ଲେକ୍ସ ଗୁଡ଼ିକ ସ୍ୱୟଂକ୍ରିୟ ବା ଅନ୍ୟ କଥାରେ ଅଚେତନ । ଦାର୍ଶନିକ ଡେକାର୍ଟେ [୧୫୯୬-୧୬୫୦], ଲମେଟ୍ରି [୧୭୦୯-୧୭୫୧ ଓ କାବାନିଶ୍ ୧୭୫୭-୧୮୦୮]ଙ୍କ ଲେଖା ମଧ୍ୟରେ ଏହି ତତ୍ତ୍ୱ ସମ୍ପର୍କୀୟ ଧାରଣା ଦୃଷ୍ଟିଗୋଚର ହୁଏ । ରବର୍ଟ ହ୍ୱାଇଟ୍ [୧୭୧୪-୧୮୦୮] ୧୭୫୧ ମସିହାରେ ରିଫ୍ଲେକ୍ସ କ୍ରିୟା ଉପରେ ତାଙ୍କର ଅଭିକ୍ରିୟା [Experiment] ଜନିତ ଫଳାଫଳ ପ୍ରଥମେ ପ୍ରକାଶ କରିଥିଲେ । ହଲ୍ ପ୍ରଥମଥରପାଇଁ ସ୍ୱେଚ୍ଛାକୃତ ଓ ଅନିଚ୍ଛାକୃତ ପ୍ରତିକ୍ରିୟା ମଧ୍ୟସ୍ଥ ପାର୍ଥକ୍ୟ ଦର୍ଶାଇ ଦେଲେ । କାଳକ୍ରମେ ଅନିଚ୍ଛାକୃତ ପ୍ରତିକ୍ରିୟା ଜନିତ ଆଲୋଚନା ଓ ଅନୁଶୀଳନ Psychology ଅଧ୍ୟୟନ ପର୍ଯ୍ୟାୟରେ ଅନ୍ତର୍ଭୁକ୍ତ ହୋଇଗଲା ଏବଂ ସ୍ୱେଚ୍ଛାକୃତ ପ୍ରତିକ୍ରିୟାର ଅଧ୍ୟୟନ ଓ ଅନୁଶୀଳନ ଊନବିଂଶ ଶତାବ୍ଦୀର ନୂତନ ମନୋବିଜ୍ଞାନ ଅଧ୍ୟୟନ ପର୍ଯ୍ୟାୟରେ ଅନ୍ତର୍ଭୁକ୍ତ ହେଲା । ଏହିରୂପେ ଅନିଚ୍ଛାକୃତ ଓ ସ୍ୱେଚ୍ଛାକୃତ ପ୍ରତିକ୍ରିୟାର ଅଧ୍ୟୟନ ଜନିତ ପାର୍ଥକ୍ୟ ଆକାରରେ physiology ଓ psychology ମଧ୍ୟସ୍ଥ ପାର୍ଥକ୍ୟ ନିର୍ଣ୍ଣିତ ହୋଇଥିଲା । କିନ୍ତୁ ବିଂଶ ଶତାବ୍ଦୀରେ ଏହି ପାର୍ଥକ୍ୟ ରହିଲା ନାହିଁ । ପାଭଲଭ [୧୮୪୯-୧୯୩୬] ଦର୍ଶାଇ ଦେଲେ ଯେ ଅଭ୍ୟାସଦ୍ୱାରା ଅଚେତନ ପ୍ରକ୍ରିୟା ଗୁଡ଼ିକ ମଧ୍ୟ ଆୟତ୍ତ ଓ ଶିକ୍ଷା କରିହେବ । ତାପରେ ସିଗମଣ୍ଡ ଫ୍ରୟେଡ୍

---

of man conscious purpose was able for the first time to exert an operative effect on evolution and that through the new knowledge acquired during the last hundred years, the evolutionary process was able for the first time to become conscious of itself. The next decisive step in evolution will accordingly be the fuller development of that self consciousness. Page 306 [What is Science ?]

[୧୮୫୬-୧୯୩୯) ଦର୍ଶାଇଲେ ଯେ କେତେକ ପର୍ଯ୍ୟାୟର ଚିନ୍ତା ଓ ଇଚ୍ଛା ଏକ ପ୍ରକାରର ଅଚେତନ ପ୍ରକ୍ରିୟା । ପରେ ବ୍ୟବହାର ବାଦୀ (Behaviourists) ମାନଙ୍କ ଅନୁଶୀଳନ ଏହି ଧାରଣାକୁ ଆହୁରି ଦୃଢ଼ୀଭୂତ କରାଇଲା ||୪୯||

ଜନ୍ ଫ୍ରେଡ଼ରିକ ହରବାର୍ଟ [୧୭୭୬-୧୮୪୧]ଙ୍କୁ ସାଧାରଣତଃ ଆଧୁନିକ ବୈଜ୍ଞାନିକ ଶିକ୍ଷାପ୍ରଣାଳୀର ଜନକ [Father scientific Pedagogy]ବୋଲି ଅଭିହିତ କରାଯାଇଥାଏ । ସେ ମାନସିକ ପ୍ରକ୍ରିୟା ଏବଂ ଦେହ ଓ ମନର ସମ୍ପର୍କିତ ଗାଣିତିକ ତଥ୍ୟ ଭିତ୍ତିରେ ଏକ [Mechanics [statics and Dynamics of the soul ଭାବରେ କଳ୍ପନା କଲେ । "ଭାବ" [Idea-vorstellung] ହିଁ ଏହି ମେକାନିକ୍ସର ପ୍ରାଥମିକ ଏକକ । ପ୍ରତ୍ୟେକ "ଭାବର" ଏକ ପ୍ରକାରର ଜଡ଼ତା Inertia]। ଦେଖାଯାଏ । ଏହି ଜଡ଼ତାକୁ ଆତ୍ମ-ସଂରକ୍ଷଣ [self preservation] ପ୍ରବଣତା କୁହାଯାଏ । ନିଉଟନ [୧୬୪୨-୧୭୨୭]ଙ୍କ ଗତି-ତତ୍ତ୍ୱ [Laws of motion] ପ୍ରଥମ ନିୟମ ପରି ପ୍ରତ୍ୟେକ ଭାବର ପ୍ରାକୃତିକ ପ୍ରବଣତା ହେଲା ଏକ ସଂପୂର୍ଣ୍ଣ ସ୍ୱାଧୀନ ବା ନିଗ୍ରହମୁକ୍ତ [Absence of Inhibition] ଅବସ୍ଥା ଆଡ଼େ ଗତି କରିବା । ପୂର୍ଣ୍ଣ ନିଗ୍ରହ [Complete Inhibition] ଓ ପୂର୍ଣ୍ଣ ସ୍ୱାଧୀନ (Complete Liberty) ଏହି ଦୁଇ ଅବସ୍ଥା ମଧ୍ୟରେ ପ୍ରତ୍ୟେକ ଭାବଧାରା ଦୋଳାୟିତ । କୌଣସି ଭାବର ସ୍ୱାଭାବିକ ପ୍ରକାଶ ବାଧାପ୍ରାପ୍ତ ହେଲେ ତାହାର ବିଲୟ ଘଟେନାହିଁ । କେବଳ ତାର କ୍ରିୟାଶୀଳତା ଓ ସ୍ୱଚ୍ଛତା, ଉଜ୍ଜ୍ୱଳତା ହ୍ରାସପାଏ ଏବଂ ତାହା ଚେତନା ସ୍ତରରେ ନ ରହି ଅବଚେତନ ସ୍ଥାନପରେ ଅବଦମିତ ଅବସ୍ଥାରେ ଏକ ପ୍ରବଣତା [Tendency] ଆକାରରେ ଅବସ୍ଥାନ

||୪୯|| A History of Experimental Psychology—by Edwin G. Boring, The Times of India Press, Bombay, Second Edition, 1969, pages 29, 39.

କରେ ।।୫୦।। ଉପଯୁକ୍ତ ପରିସ୍ଥିତିର ସମାବେଶ [Reintorcement-Resonanz]ରେ ଅବଦମିତ ଭାବ ପୁଣି ଆତ୍ମପ୍ରକାଶ କରେ ବା ଚେତନାର ବାସ୍ତବ ସ୍ତରକୁ ଚାଲିଆସେ । ଏହି ସମାବେଶର ନ୍ୟୁନତମ କ୍ରିୟାକ୍ଷମ ଶକ୍ତିକୁ "ଚେତନାର ଦେହଳୀ" [Threshold or Limen of Consciousness] କୁହାଯାଏ ।

ଏହିରୂପେ ହାର୍ବାର୍ଟଙ୍କ ଭାବଧାରା ମଧ୍ୟରେ Tension, Conflict, Inhibition ପ୍ରଭୃତିର ଧାରଣା ଗୁଡ଼ିକ ପରୋକ୍ଷଭାବରେ ଦେଖିବାକୁ ମିଳେ । ହର୍ବାର୍ଟଙ୍କ ଭାବଧାରା wundt, [1832-1920] Fechner, [1801-1877] Weber, [1795-1878] Hartman [1842-1906] ପ୍ରଭୃତି ବୈଜ୍ଞାନିକ ଗଣଙ୍କୁ ପ୍ରଭାବିତ କରିଥିଲା । ଅବଚେତନ ମନ ସମ୍ବନ୍ଧରେ ତାଙ୍କର ଭାବଧାରା ସହ ଫ୍ରଏଡ଼ଙ୍କ ଭାବଧାରାର ମଧ୍ୟ କେତେକ ସାମଞ୍ଜସ୍ୟ ପରିଲକ୍ଷିତ ହୁଏ । ଏହି ଭାବଧାରାର ଗୋଟିଏ ଉଲ୍ଲେଖଯୋଗ୍ୟ ତାତ୍ପର୍ଯ୍ୟ ହେଲା—ମଣିଷର ମନ କେବଳ ଚେତନ ସ୍ତରରେ ସୀମାବଦ୍ଧ ନୁହେଁ, ଚେତନା ବା ଚେତନାସ୍ତର ମଣିଷ ମନର ଏକ ଅଂଶ ବିଶେଷ ମାତ୍ର । ୧୮୫୫ ମସିହାରେ ହେଲମ୍‌ହୋଲ୍‌ଜ

---

।।୫୦।। ଏହି ଅବଦମିତ ଅବସ୍ଥାକୁ ଲାଇବ୍‌ନିଜ [୧୬୪୬-୧୭୧୬]ଙ୍କ Petites Perceptions ସହ ତୁଳନା କରାଯାଇ ପାରେ । ଲାଇବନିଜ୍‌ଙ୍କ ମତରେ ଚେତନା ଓ କ୍ରିୟାଶୀଳତା [Activity] ଏକ କଥା । କୌଣସି ଭାବ କ୍ରିୟାଶୀଳହୋଇ ବିକଶିତ ହେଲେ ତା'ର ଉଜ୍ଜ୍ୱଳତା [Clarification] ବୃଦ୍ଧିପାଏ । ଏହିରୂପେ କ୍ରିୟାଶୀଳତା ଓ ଉଜ୍ଜ୍ୱଳତାର ପରିମାଣ ଉପରେ ନିର୍ଭର କରି ଚେତନାର ବିଭିନ୍ନସ୍ତର [Degrees of consciousness] ସୃଷ୍ଟି ହୋଇଥାଏ । ଅର୍ଥାତ ଅବଦମିତ Petites Perception ଠାରୁ ଆରମ୍ଭକରି Apperception ରୂପରେ ଚେତନାରେ ତାହା ବାସ୍ତବ ରୂପ ପରିଗ୍ରହ କରିବା ପର୍ଯ୍ୟନ୍ତ ଭାବଗୁଡ଼ିକର ବିଭିନ୍ନ ସ୍ତରରେ ବିକାଶ ଲାଭ କରିଥାଏ ।

[Helmholtz-(1821-1894] ତାଙ୍କର ଅଚେତନ ସିଦ୍ଧାନ୍ତ [Doctrine of unconscious inference] ତତ୍ତ୍ୱ ପ୍ରବର୍ତ୍ତନ କରିଥିଲେ । ॥୫୧॥ ହେନେରୀ ମଡ୍‌ସ୍‌ଲେ [Henry Maudsley] ୧୮୭୮ ମସିହାରେ ପ୍ରକାଶିତ ତାଙ୍କର Psychology and Pathology of mind ପୁସ୍ତକରେ ମଧ୍ୟ ଦର୍ଶାଇଥିଲେ ଯେ ମଣିଷର ମନ କେବଳ ଚେତନାସ୍ତର ମଧ୍ୟରେ ସୀମିତ ନୁହେଁ । ମଣିଷମନର ପରିସୀମା ଯେ ଚେତନାସ୍ତରଠାରୁ ଅଧିକ ପରିବ୍ୟାପ୍ତ-ଏହି ଧାରଣା ତତ୍କାଳୀନ ମନୋବିଜ୍ଞାନ [Introspective psychology]ର ଦୁର୍ବଳତା ପ୍ରମାଣ କରିଥିଲା ।

୧୭୫୦ ମସିହା ବେଳକୁ ଲମେଟ୍ରି ତାଙ୍କର "Doctrine of Hedonism" ପ୍ରକାଶ କରିଥିଲେ । ଏହି ତତ୍ତ୍ୱ ଅନୁସାରେ ଆନନ୍ଦ [Pleasure] ହିଁ ଜୀବନର ବାଞ୍ଛା ଏବଂ ଜୀବନର ସମସ୍ତ ଉଦ୍ଦେଶ୍ୟ [Motivation] ମୂଳରେ ସ୍ୱାର୍ଥ ନିହିତ ଥାଏ । ବେନ୍ଥାମ [୧୭୪୮-୧୮୩୨] ୧୭୭୯ ମସିହାରେ ଏହି ତତ୍ତ୍ୱକୁ ନୂତନ ଭାବରେ ପରିବେଷଣ କରିଥିଲେ । ସୁଖ ଆଉ ଦୁଃଖ,ଏହି ଦୁଇଟି ଭାବଛଡ଼ା ଅନ୍ୟ କୌଣସିଭାବ ମଣିଷର କ୍ରିୟାଶୀଳତାର ଉତ୍ସ ବା ପ୍ରଣୋଦନା ରୂପେ କାର୍ଯ୍ୟ କରିନାହିଁ । ମଣିଷର ସବୁ କ୍ରିୟାକଳାପ ଦୁଇଟି ସାର୍ବଭୌମ ଭାବଦ୍ୱାରା ପରିଚାଳିତ—"କ୍ଳେଶ"

---

॥୫୧॥ ଏହି ତତ୍ତ୍ୱ ୧୮୬୦ରେ ପ୍ରକାଶିତ Helmholtzଙ୍କ Optic, [Second Volume]ପୁସ୍ତକରେ ପ୍ରକାଶିତ ହୋଇଥିଲା । Wundt ଏହି ତତ୍ତ୍ୱକୁ ୧୮୫୮-୧୮୬୨ ମସିହାରେ ସମର୍ଥନ କରୁଥିଲେ । Helmholtz ୧୮୪୭ ମସିହାରେ ଶକ୍ତିର ସଂରକ୍ଷଣ [Law of conservation of Energy—weber die Erhaltung der Kraft] ତତ୍ତ୍ୱ ପ୍ରବର୍ତ୍ତନ କରିଥିଲେ ।

ଓ "ଆନନ୍ଦ" ["Pain"ଓ "Plesure"] ||୫୨|| ହର୍ବର୍ଟ ସ୍ପେନସର [୧୮୨୦–୧୯୦୩] ଏହି ଧାରଣାକୁ ବିବର୍ତ୍ତନ ବାଦର ପରିପ୍ରେକ୍ଷୀରେ ଆଲୋଚନା କରି ଏକ ନୂଆ ମୋଡ଼ଦେଲେ । ତାଙ୍କ ମତରେ ବିବର୍ତ୍ତନର ପାହାଚରେ, ଯେତେବେଳେ "ଜୀବ"ର ପ୍ରାଧାନ୍ୟ ବା ଗୁରୁତ୍ୱ ଆସିନାହିଁ, ଇନ୍ଦ୍ରିୟାନୁଭୂତ ହିଁ ମୁଖ୍ୟ, ସେହି ଅବସ୍ଥାରେ ବର୍ତ୍ତମାନକାଳରେ ସୁଖ ଅନ୍ୱେଷଣ କରିବା ହିଁ ପ୍ରଧାନ ବିଷୟ ଥିଲା । ମଣିଷ ମଧ୍ୟରେ "ଜୀବ" ଗୁଣ୍ଡିକର ବିକାଶ ସାଧନ ହେଲାପରେ ଭବିଷ୍ୟତରେ ଅଧିକ ସୁଖ ଆଶାରେ ବର୍ତ୍ତମାନକାଳରେ ଦୁଃଖ-ବରଣ କରିବାର ଔଚିତ୍ୟର ଧାରଣା ଆସିଲା । ଫ୍ରଏଡ୍ ତାଙ୍କର ତତ୍ତ୍ୱ ଗୁଡ଼ିକ ମଧ୍ୟରେ ଏହିପରି ଏକ ସୁଖ-ତତ୍ତ୍ୱ [Pleasure Principle]ର ଧାରଣା ପ୍ରୟୋଗ କରିଥିଲେ ।

ଫ୍ରଏଡ୍‌ଙ୍କ ତତ୍ତ୍ୱ ଗୁଡ଼ିକର ପୃଷ୍ଠଭୂମିରେ ତତ୍କାଳୀନ ପରିବେଶର କେତୋଟି ମୌଳିକ ବିଷୟ ରହିଥିଲା—ଯାହାଦ୍ୱାରା ସେ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ ପ୍ରଭାବିତ ହୋଇଥିଲେ । ପ୍ରଥମରେ, ଚେତନା ସ୍ତରଠାରୁ ଅଧିକ ପରିବ୍ୟାପ୍ତ "ମଣିଷ ମନର" ଧାରଣା । ଦ୍ୱିତୀୟରେ, ପ୍ରୟୋଗବାଦୀ [utilitarians] ମାନଙ୍କ "ସୁଖତତ୍ତ୍ୱ" । ତୃତୀୟରେ, ସେହି ସମୟକୁ ହିପ୍ନୋଟିଜମ୍ ଦ୍ୱାରା ହିଷ୍ଟେରିଆ ପ୍ରଭୃତି କେତେକ ମାନସିକ ରୋଗର

---

||୫୨|| An Introduction to the Principles of Morals and Legislation—1779. [48—page 705]. Nothing can act of itself as a motive but the ideas of pleasure or pain. Human action occurs under the governance of two sovereign masters, pain and pleasure. All action is self interested, but free selfinterest results in "the greatest good to the greatest number."

ଚିକିତ୍ସା ପ୍ରଣାଳୀର ସ୍ୱୀକୃତି ॥୫୩॥ ଚତୁର୍ଥରେ, ହେଲମ୍‌ହୋଲ୍‌ଜଙ୍କ ଶକ୍ତି ସଂରକ୍ଷଣ ତତ୍ତ୍ୱ (Law of conservation of Energy) ।

ଫ୍ରଏଡ୍ ତାଙ୍କର ଦୀର୍ଘ ଜୀବନ ବ୍ୟାପୀ ଅଧ୍ୟୟନ ଓ ଗବେଷଣା କାଳରେ ତିନିଜଣ ବିଶିଷ୍ଟ ବୈଜ୍ଞାନିକଙ୍କ ଅଧୀନରେ କାର୍ଯ୍ୟ କରିଥିଲେ । ଚାରକୋଟ୍ (୧୮୨୫-୧୮୯୩), ବ୍ରେନ୍‌ଟାନୋ (୧୮୩୮-୧୯୧୭) ଓ ବ୍ରୁକ୍ ବ୍ରେନ୍‌ଟାନୋଙ୍କ ମନୋବିଜ୍ଞାନ

॥୫୩॥ ଫ୍ରଏଡ୍‌ଙ୍କ ପୂର୍ବରୁ Motivational Psychologyର ଏକ ଦୀର୍ଘ ଯାତ୍ରାପଥ ଅନୁସରଣ କରାଯାଇପାରେ । ପାରାସେଲସସ୍ [୧୪୯୨-୧୫୪୧] ଦର୍ଶାଇ ଥିଲେ ଯେ ଗ୍ରହ ଉପଗ୍ରହ ପରି "ଚୁମ୍ବକ" ମଣିଷକୁ ପ୍ରଭାବିତ କରେ । ହେଲ୍‌ମଣ୍ଟ୍ [୧୫୭୭-୧୬୪୪], Animal Magnetism ଆବିଷ୍କାର କରିଥିଲେ । ମେସ୍‌ମର [୧୭୩୪-୧୮୧୫]ଙ୍କ ଦ୍ୱାରା ମେସ୍‌ମେରିଜମ୍ [Mesmerism] ପ୍ରତିପାଦିତ ହୋଇଥିଲା । ବ୍ରେଡ୍ [୧୭୯୫-୧୮୬୦]୧୮୪୩ରେ ପ୍ରକାଶିତ ତାଙ୍କର "Neurypnology or the Rationale of the Nervous Sleep" ପୁସ୍ତକରେ Hypnotismକୁ ଏକ ସ୍ନାୟବିକ ପ୍ରକ୍ରିୟା ରୂପେ ପ୍ରତିପାଦନ କଲେ, ଯଦ୍ୱାରା ଏହାକୁ ଏକ ବୈଜ୍ଞାନିକ ଦୃଷ୍ଟି ଭଙ୍ଗୀରେ ଦେଖିବାର ବାଟ୍ସର ସ୍ୱୀକୃତ ହେଲା । ଚାର୍‌କୋଟ୍ [୧୮୨୫-୧୮୯୩] ତାଙ୍କର Neurological Clinicରେ ହିଷ୍ଟେରିଆ ରୋଗର ଚିକିତ୍ସା କରୁଥିଲେ । ଏବଂ ଦର୍ଶାଇଲେ ଯେ Hypnosis ଏକ ପ୍ରକାରର ମନୋନିବେଶ [State of Monoideism] ବର୍ଣ୍ଣହାଇମ୍ [୧୮୩୭-୧୯୧୯] "Suggestion"ର ଧାରଣା ଦେଇଥିଲେ ଓ ଜାନେଟ୍ (୧୮୫୯-୧୯୪୭) ହିଷ୍ଟେରିଆ ସମ୍ବନ୍ଧରେ ଏକ "ତତ୍ତ୍ୱ" ଦେଇଥିଲେ [Motivational theory of Hysteria.]

ଅନୁଭୂତ-ଭିତ୍ତିକ ଥିଲ ||୫୪|| ଏବଂ ମୁଖ୍ୟତଃ ମାନସିକ କାର୍ଯ୍ୟକଳାପର ଧାରାଗୁଡ଼ିକ ସହ ସଂପୃକ୍ତ ଥିଲ । ସେ ପ୍ରତ୍ୟେକ କ୍ରିୟା (Act)କୁ ତାର ଉଦ୍ଦେଶ୍ୟ (Intention) ଦ୍ୱାରା ବୁଝାଇବାର ପ୍ରଣାଳୀ ଗ୍ରହଣ କରିଥିଲେ । ଇନ୍ଦ୍ରିୟାନୁଭୂତ ପରିବର୍ତ୍ତେ ନିର୍ଦ୍ଦିଷ୍ଟ କ୍ରିୟାହିଁ ଥିଲ ତାଙ୍କ କାର୍ଯ୍ୟ ପ୍ରଣାଳୀର ମୌଳିକ ଧାରା ଓ ଏକକ । ପ୍ରାୟ ଠିକ୍ ଏହି ସମୟକୁ ଅଭିକ୍ରିୟାତ୍ମକ ମନୋବିଜ୍ଞାନର ପ୍ରତିଷ୍ଠାତା (Founder of Experimental psycholosgy), ଉଣ୍ଡ (wilhelm wundt-1832-1920)ଙ୍କ ଗବେଷଣା ସମ୍ବଳିତ ପୁସ୍ତକ ପ୍ରକାଶିତ ହୋଇଥିଲ ||୫୫|| ଉଣ୍ଡଙ୍କ ଧାରା ମଧ୍ୟରେ ଅଭିକ୍ରିୟା ମାଧ୍ୟମରେ ଇନ୍ଦ୍ରିୟାନୁଭୂତର ଅନୁଶୀଳନ, ଓ ସେ ଗୁଡ଼ିକର ସଂଯୋଗର ପ୍ରଣାଳୀ ଉପରେ ଅଧିକ ଗୁରୁତ୍ୱ ଦିଆଯାଇଥିଲ । ଭବିଷ୍ୟତ ମଧ୍ୟରେ ନୁହେଁ, ଅତୀତ ମଧ୍ୟରେ ରହିଛି ମଣିଷର "କ୍ରିୟା" ଗୁଡ଼ିକର ଗୃଢ଼କାଠି । ଅନ୍ୟକଥାରେ କାର୍ଯ୍ୟ-କାରଣ ଭିତ୍ତି ଉପରେ ମଣିଷର ସବୁ କ୍ରିୟାର ଅନୁସନ୍ଧାନ କରିବାକୁ ହେବ । ଥର୍ଣ୍ଣଡ଼ାଇକ୍ (୧୮୭୪-୧୯୪୯) ଏହାକୁ Law of effect ବୋଲି ନାମିତ କରିଥିଲେ । ସୁଖ-ତନ୍ତ୍ର [Hedonism] ଅନୁସାରେ ଏହାକୁ Hedonism of the post ବୋଲି ମଧ୍ୟ କୁହାଯାଇଥାଏ । ବ୍ରୁକ୍ ମନୋବିଜ୍ଞାନକୁ ମୁଖ୍ୟତଃ central Nervous systemର ଅନୁଶୀଳନ ଭାବରେ ଗ୍ରହଣ କରିଥିଲେ । ତାଙ୍କ ମତରେ ମସ୍ତିଷ୍କର କୋଷ ଗୁଡ଼ିକ ମଧ୍ୟରୁ ଯେଉଁ ଭୌତିକ ଶକ୍ତି (Physical Energy) ଉପଜାତ ହୁଏ ତାହା ମନସ୍ତାତ୍ତ୍ୱିକ ଶକ୍ତି Psychical Energy) ଆକାରରେ ରୂପାନ୍ତରିତ ହୁଏ ।

---

||୫୪|| Emperical.
"Experiences alone influence me as a mistress" (48—page 357)
Author of "Psychologie vom empirischen Standpunkte" 1874
Substituted 'Act' for "Content."

||୫୫|| Physiologische Psychologie—1873.

ଫ୍ରଏଡ଼ ତାଙ୍କର ତତ୍ତ୍ୱଗୁଡ଼ିକ ମଧ୍ୟରେ ମଣିଷର ପ୍ରାକୃତିକ ଜୀବନ, ମଣିଷର ଆଚରଣ ବା ବ୍ୟବହାର ଓ କେତେକ ମାନସିକ ରୋଗ ବା ବିଚ୍ୟୁତିର ନିରାକରଣ—ଏହି ତିନୋଟି ବିଭାଗ ଅନ୍ତର୍ଭୁକ୍ତ କରିଥିଲେ ॥*୭॥ ତାଙ୍କ ତତ୍ତ୍ୱ ଗୁଡ଼ିକୁ କେତେକ ନିର୍ଦ୍ଦିଷ୍ଟ ପର୍ଯ୍ୟାୟଭୁକ୍ତ କରାଯାଇପାରେ । ପ୍ରଥମଟି ହେଲା "ପ୍ରବୃତ୍ତି" [Instinct] ଓ ମାନସିକ କ୍ରିୟାଶୀଳତା ସମ୍ବନ୍ଧରେ ତତ୍ତ୍ୱ । ଦ୍ୱିତୀୟ ବିଭାଗରେ ମଣିଷର "ମନ" ଓ ତାର ଗଠନ ସମ୍ବନ୍ଧରେ ତତ୍ତ୍ୱ । ତୃତୀୟ ପର୍ଯ୍ୟାୟରେ ମଣିଷମନର କାର୍ଯ୍ୟକାରୀ ପ୍ରଣାଳୀ ସମ୍ବନ୍ଧରେ ତତ୍ତ୍ୱ ॥*୭॥ ଏହି ତତ୍ତ୍ୱଗୁଡ଼ିକ ପଛରେ ଦୁଇଟି ମୌଳିକ ଭାବନା ବା ସାମାନ୍ୟ କଥନ ରହିଥିଲା । ମଣିଷର ବ୍ୟକ୍ତିତ୍ୱ ଓ ଆଚରଣ "ମଣିଷ ଜାତି"ର କେତେକ ସାଧାରଣ ଗୁଣ ବା ସାମର୍ଥ୍ୟର ବିକାଶ ନୁହେଁ ।

---

॥*୭॥ ଆଚରଣ ଗୁଡ଼ିକ ମଧ୍ୟରେ Dreams, Errors or Slips of tongue, relationship between parents and children of the opposite sex, relationship between feelings of guilt and inadequacy and projection, tendency to forget etc. ଅନ୍ତର୍ଭୁକ୍ତ ।

॥*୭॥ (i) Theory of instincts and drives (including the theory of Psychosexual developement)

(ii) Theory of Mind entities

(iii) Theory of Mental mechanism.

X X ଫ୍ରଏଡ଼ ତାଙ୍କର "The Future of an Illusion" [The Hogorth Press and the Institute of Psychoanaloyis,4th Impression, translated by W. D. Robson

ମଣିଷର ପ୍ରତ୍ୟେକ ଆଚରଣ ଓ କାର୍ଯ୍ୟ ପଛରେ ଏକ ନିର୍ଦ୍ଦିଷ୍ଟ "ଉଦ୍ଦେଶ୍ୟ" ଓ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ବିଦ୍ୟମାନ । ଏହି "ଉଦ୍ଦେଶ୍ୟ" ଓ ଲକ୍ଷ୍ୟ ସାହାଯ୍ୟରେ ମଣିଷର "ଆଚରଣ" ଓ କାର୍ଯ୍ୟକୁ ବୁଝିବା ସମ୍ଭବ ହେବ ।

---

Scott, 1949]ରେ ଧର୍ମକୁ "universal obsessional neurosis of humanity" ବୋଲି ବର୍ଣ୍ଣନା କରିଛନ୍ତି ।

"The stock of religious ideas contains not only wish fulfilments but also important historical memories ... we know that the human child cannot well complete its development towards culture without passing through a more or less distinct phase of neurosis. [page 75] ............ In just the same way one might assume that in its developement through the ages mankind as a whole, experiences............ .. that are analogous to the neurosis and ....for the same reasons, because in the ages of its ignorance and intellectual weakness it achieved by purely affective means the insticntual renunciations, indispensable for means communal existence. And the residue of these repression like processes, which took place in antiquity, has long clung to civilisation. Thus religion would be the universal obsssessional neurosis of humanity. It, like child's, originated in the Oedipus Complex, the relation to the father. [page 76]

ହେବ । ଏବଂ ମଣିଷର କ୍ରିୟାକଳାପ ପଛରେ ଥିବା ଏହି "ଉଦ୍ଦେଶ୍ୟ" ବା ଲକ୍ଷ୍ୟ ଏକ ପ୍ରକାରର ଅଚେତନ ପ୍ରକ୍ରିୟା ॥୫୮॥ ଏହି ପ୍ରକ୍ରିୟାକୁ ଏକ ପ୍ରକାରର ମନସ୍ତାତ୍ତ୍ୱିକ ଶକ୍ତି [Psychic energy] ଭାବରେ କଳ୍ପନା କରାଯାଇଥିଲା । ଭୌତିକ ବା ଜୈବିକ ଧାତୁଗୁଡ଼ିକ ମଧ୍ୟରୁ ଆସେ ଏହି ମନସ୍ତାତ୍ତ୍ୱିକ ଶକ୍ତି ଏବଂ ବିଭିନ୍ନ ମାନସିକ କ୍ରିୟାକଳାପ ଏହି ଶକ୍ତିର ରୂପାନ୍ତର ଭାବରେ ମଧ୍ୟ ଗ୍ରହଣ କରାଯାଇଥିଲା ।

ଫ୍ରଏଡ୍ ଦୁଇ ଶ୍ରେଣୀର "ପ୍ରବୃତ୍ତି" [Instinct]ର କଳ୍ପନା କରିଥିଲେ ॥୫୯॥ ଜୀବନର ପ୍ରବୃତ୍ତି । ମୃତ୍ୟୁର ପ୍ରବୃତ୍ତି । ୧୯୩୨ ମସିହାରେ ଆଲବର୍ଟ ଆଇନଷ୍ଟାଇନଙ୍କ ନିକଟକୁ ସେ ଏକ ଚିଠି ଲେଖିଥିଲେ । ଏ ଚିଠିର ବିଷୟବସ୍ତୁ ଥିଲା "ଯୁଦ୍ଧ କାହିଁକି" ? ଆଇନଷ୍ଟାଇନ ଏ ସମ୍ପର୍କରେ ଫ୍ରଏଡଙ୍କର ମତାମତ ଲୋଡ଼ିଥିଲେ । ଫ୍ରଏଡ୍‌ଙ୍କ ମତରେ ମଣିଷର "ମୃତ୍ୟୁପ୍ରବୃତ୍ତି"ହିଁ ଯୁଦ୍ଧପାଇଁ ଦାୟୀ । ଏବଂ ସାମାଜିକତା ଓ ସଂସ୍କୃତି ଦ୍ୱାରା ଏହାର ନିୟନ୍ତ୍ରଣ କରାଯାଇପାରିବ ॥୬୦॥ ଜବନ-

---

॥୫୮॥ ଏହାକୁ Psychic determinism ଓ Unconscious Motivation କୁହାଯାଏ ।

॥୫୯॥ Life or Sex Instincts
(ii) Death Instinct [Beyond Pleasure Principle—1922.]

॥ ୬୦ ॥ Indtroduction to psychology by Morgan and King, TMH Edition, 1975 Page 403. ଫ୍ରଏଡ୍‌ଙ୍କର ଏହି ମତକୁ Naturistic view of Aggression କୁହାଯାଏ । ଏ ବିଷୟରେ ଅନ୍ୟ ମତବାଦ ହେଲା Nurturist or Environmental view of Aggression । ଏହି ମତବାଦର ପରିପୂରକ ଭାବେ Frustration—Aggression Hypothesis ମଧ୍ୟ ପ୍ରବର୍ତ୍ତିତ ହୋଇଅଛି ।

ପ୍ରବୃତ୍ତିର ବିକାଶ ଧାରାରେ ଏକ କ୍ରମିକତା ଅଛି । ଏହି ବିକାଶ ପ୍ରଣାଳୀରେ ମଣିଷର ବିଭିନ୍ନ ଅବସ୍ଥାରେ ପ୍ରଚ୍ଛନ୍ନ ପ୍ରବୃତ୍ତି ଗୁଡ଼ିକର ବିଭିନ୍ନ ଧରଣର ବିକାଶ ଘଟିଥାଏ ॥୬୧॥ କାରଣ ବିଭିନ୍ନ ଅବସ୍ଥାରେ ପ୍ରବୃତ୍ତି ବିଭିନ୍ନ ଲକ୍ଷ୍ୟଦ୍ୱାରା ନିଜର ଉଦ୍ଦେଶ୍ୟ ଚରିତାର୍ଥ କରିଥାଏ । ପ୍ରବୃତ୍ତି ଚରିତାର୍ଥ ହେବାରେ ପ୍ରତିବନ୍ଧକ ଉପୁଜିଲେ ଏହି ପ୍ରାବୃତ୍ତିକ ପ୍ରବାହର ଘଟାନ୍ତର ହୁଏ । କେତେବେଳେ ଏକ ଆକ୍ରମଣାତ୍ମକ ମନୋବୃତ୍ତି ଆକାରରେ, କେତେବେଳେ ଏକ ନିଗ୍ରହ ରୂପରେ । ପୁଣି କେତେବେଳେ ଏକ ପଳାୟନ ପନ୍ଥାର ଆଶ୍ରୟ କରି ॥୬୨॥ ଏହା ସହିତ ଉପୁଜେ ଦ୍ୱନ୍ଦ୍ୱ ଆଉ ସଂଘର୍ଷ ॥୬୩॥ ପରିସ୍ଥିତି ସହ ପ୍ରାବୃତ୍ତିକ ପ୍ରବାହର ସଂଘର୍ଷ । ଫଳରେ ଉପୁଜେ ବ୍ୟବହାର ଆଉ ଆଚରଣରେ ବିକାର ଆଉ କୃତ୍ରିମ ବିକଳ୍ପ ସବୁ ॥୬୪॥

ମଣିଷ ମନର ଗଠନ ସମ୍ପର୍କୀୟ ତତ୍ତ୍ୱରେ ସେହିପରି ଫ୍ରଏଡ଼ଙ୍କ ମୌଳିକ ଚିନ୍ତା ସୁସ୍ପଷ୍ଟଭାବେ ପରିସ୍ଫୁଟ ହୋଇଥିଲା । ମଣିଷର ମନ କେବଳ

---

॥ ୬୧ ॥ (a) Pregenital stage, latency stage and genital stage.

(b) Pregenital stageର ବିଭାଗ:—Oral sucking stage, stage of anal gratification, Oral loiting stage urethral stage, phallic stage etc.

॥ ୬୨ ॥ Aggression, Repression and Regression [acting childish, Psychotic reactions, Denial, Depression, Schizophrenia, Mania etc, etc]

॥ ୬୩ ॥ Tension, Conflict [Neurosis, Compulsion, Obsession, Phobia etc]

॥ ୬୪ ॥ Oedipus complex, Castration fear, Homosexuality, Fixation etc.

ବୃନ୍ଦାବନ ନୁହେଁକି ଏଠି ଖାଲି ଶଙ୍ଖ ମଲମଲ ପଥର ଆଉ କାଚକେନ୍ଦୁ ପଣ ପାଣି ନାହିଁ । ଏଠି ସାତତାଳ ପାଣି । ସାତତାଳ ପଙ୍କ । ତା ଭିତରେ ଫରୁଆ ଆଉ ଫରୁଆ ଭିତରେ "ଜୀବନ ନାଟିକା" । ଏଠି ଅଗନା ଅଗନ ବନସ୍ତ । ତା ଭିତରେ ଗୁହା । ଗୁହା ଭିତରେ ସୁଡ଼ଙ୍ଗ । ସୁଡ଼ଙ୍ଗ ଭିତରେ ଉଆସ । ଉଆସ ଭିତରେ ଅପୁର । ଏଠିମନ ଏକ ମ.ଲଆଣୀ । ତା ପାଖରେ ଅଛି ମଣିଷକୁ ମେଣ୍ଢା କରିବାର ଗଦା । ନାଲିଫୁଲ । କଳାଫୁଲ । ଏହିପରି ସବୁ । ମନର ସ୍ତର ଅଛି । ଚେତନ । ପ୍ରାକ୍ ଚେତନ ଓ ଅଚେତନ ॥୬୫॥ ପ୍ରତ୍ୟେକ ସ୍ତରର ନିର୍ଦ୍ଦିଷ୍ଟ କାର୍ଯ୍ୟ ରହିଛି । ଉଦାହରଣ ସ୍ୱରୂପ—ମଣିଷ ଯେଉଁ ଭାବ ଗୁଡ଼ିକ ଭୁଲିଯିବାକୁ ଚାହେଁ, ଯାହାକୁ "ନିଗ୍ରହ" କୁହାଯାଏ, ସେ ଗୁଡ଼ିକ ଅଚେତନ ମନର ଭଣ୍ଡାରରେ ଗଚ୍ଛିତ ହୋଇରହିଥାଏ । ସେହିପରି ସବୁ ପ୍ରାକୃତିକ ପ୍ରବାହକୁ ଚରିତାର୍ଥ କରିବାର ଇଚ୍ଛା, ଆକାଙ୍କ୍ଷା, ପ୍ରବଣତା ଓ କ୍ରିୟାଶୀଳତା "ଅଚେତନ ମନ"ରେ ଗୁମ୍ଫିତ ହୋଇରହିଥାଏ । ଏହାକୁ "Id" କହନ୍ତି । ଏହି "Id" ହିଁ କଳ୍ପବଟ-ବାଞ୍ଛାକଳ୍ପତରୁ । ପ୍ରବୃତ୍ତି ଚରିତାର୍ଥ କରିବା ପାଇଁ "Id" ରୁ ଜାତ ମାନସିକ ଶକ୍ତି [Energy]କୁ "Libido" କୁହାଯାଏ । ଆତ୍ମ ସଂରକ୍ଷଣ କରିବାର ପ୍ରବୃତ୍ତି ଓ ଦଣ୍ଡରୁ କ୍ଷାନ୍ତ ପାଇବାର ପ୍ରବୃତ୍ତି ଯୋଗୁ ମଣିଷ ବହୁତ ଗୁଡ଼ିଏ ବିଷୟ ଅବଧାରଣା ଓ ଶିକ୍ଷା କରେ । ଏହା ଉଦ୍ଦେଶ୍ୟକୁ ସାମାଜିକତା ଆଡ଼େ ପରିଚାଳିତ କରେ ଓ ବାସ୍ତବ ସହିତ ତାର ଅଭିଯୋଜନା ସ୍ଥାପନ କରେ । ଏଇଥିରୁ ଜାତହୁଏ ଅହଂ ବା Ego॥୬୬

---

॥ ୬୫ ॥ Conscious, Preconscious, and Unconscious mind.

॥ ୬୬ ॥ Ego works in the service of the reality principle. It is made up of learned instrumental acts for satisfying motives of the accomodated self-knowledge that makes up the perceived self.

ଅହଂ ଦ୍ୱାରା ପରିଚାଳିତ ହୋଇ ପିତାମାତା ଓ ମୁରବି ମାନଙ୍କର ନୀତି ଓ ଆଦର୍ଶକୁ ଗ୍ରହଣ କରି ସେମାନଙ୍କର ଭଜନ ହେବା ପ୍ରବୃତ୍ତିରୁ ଜନ୍ମେ Super-Ego । ଏହି ନୀତି ଓ ଆଦର୍ଶ ଜନିତ ଭାବ ଆସେ ସମାଜରେ ସ୍ୱୀକୃତ ଭାବ ଗୁଡ଼ିକ ମଧ୍ୟରୁ । Super-Ego କୁ ମୋଟାମୋଟି ଭାବେ "ବିବେକ" ସହି ତୁଳନା କରି ଯାଇପାରେ ।

ମନର ଏଇ ବିଭିନ୍ନ ସ୍ତରର କାର୍ଯ୍ୟକାରୀ ପ୍ରଣାଳୀର ଏକ ବୈଶିଷ୍ଟ୍ୟ ରହିଛି । ଏହାର କାର୍ଯ୍ୟ ପ୍ରଣାଳୀର କେନ୍ଦ୍ରିକ ଭାବ ହେଲା—"ଆତ୍ମରକ୍ଷା" ॥୬୭॥ Id, Ego ଓ Super-Ego—ଏହି ତିନି ସତ୍ତା ମଧ୍ୟରେ ଉପୁଜେ ଦ୍ୱନ୍ଦ୍ୱ, ବିଭିନ୍ନ ପ୍ରବୃତ୍ତି ଚରିତାର୍ଥ କରିବାର ପ୍ରବଣତା ଯୋଗୁ । ଫଳରେ ମାନସିକ ଶକ୍ତିର ସ୍ଥାନାନ୍ତର[Displacement, kicking the dog] ବି ଘଟିଥାଏ । Ego ମନ୍ଦ ପ୍ରବୃତ୍ତି ଚରିତାର୍ଥ କରିବାର ପ୍ରବଣତାକୁ ନିୟନ୍ତ୍ରଣ କରେ । ତାହାକୁ "ନିଗ୍ରହ କହନ୍ତି ॥ ୬୮ ॥ ଏହା "ଅଚେତନ"ର "ବିରାଟ" ରାଜ୍ୟରେ ପ୍ରବୃତ୍ତିର ଛଦ୍ମ ବନବାସ । କଙ୍କ, ବଲ୍ଲଭ, ବୃହନ୍ନଳା, ଗ୍ରନ୍ଥିକ,ସୈରିନ୍ଧ୍ରୀ, ତନ୍ତ୍ରୀପାଳ," ଇତ୍ୟାଦି କେତେ କ'ଣ । ସେହିପରି ବିଭିନ୍ନ ପ୍ରଣାଳୀ ଅବଲମ୍ବନରେ Ego କୌଣସି ଉଦ୍ୟମ ବା କାର୍ଯ୍ୟରେ ବିଫଳତାରୁ କିମ୍ବା କୌଣସି ବାହ୍ୟିକ ବିପଦର ଭୟ ଓ ଆଶଙ୍କାରୁ ତ୍ରାହି ପାଇବାର ଚେଷ୍ଟା କରିଥାଏ ॥୬୯॥ ନୀତି ଓ ଆଦର୍ଶରୁ ବିଚ୍ୟୁତି ଘଟିଲେ ବା ତାର ସମ୍ଭାବନା

---

॥ ୬୭ ॥ Defences.

॥୬୮॥ Repression [Eorgetting]

॥୬୯॥ Rationalisation [making excuses, finding socially acceptable bases for behaviour] and projection [Blaming others, unacceptable instinctual impulses attributed to outside agents]

ଦେଖାଦେଲେ Super-Egoର କ୍ରିୟାଶୀଳତାରୁ ଅପରାଧବୋଧ ଜାଗତେ ହୋଇଥାଏ ।।୭୦।। କୌଣସି ଅସ୍ପୃହଣୀୟ ବା ଅବାଞ୍ଛନୀୟ ପ୍ରବଣତା ଅବଦମିତ ନହୋଇ 'Id'ର ପ୍ରରୋଚନାରେ କ୍ରିୟାଶୀଳ ହେବାର ଆଶୁ ସମ୍ଭାବନା ଦେଖା ଦେଲେSuper-Egoର କଣ୍ଟ୍ରୋଲ ଫଳରେ ଦେଖାଦିଏ ଉତ୍କଣ୍ଠା ଅଛୁ ଉଦ୍‌-ବିଗ୍ନତା ।। ୭୧ ।। ସେହିପରି ମନ୍ଦ-ପ୍ରବଣତାର ପ୍ରକାଶକୁ ନିରୋଧ କରିବା ପାଇଁ Super-Egoର ତାଡନାରେ ବିଭିନ୍ନ ପ୍ରକାରର ପ୍ରତିକ୍ରିୟା ସଂଗଠିତ ହୋଇଥାଏ ।। ୭୨ ।। କୌଣସି ବିପର୍ଯ୍ୟସ୍ତ ଅବସ୍ଥାର ସମ୍ମୁଖୀନ ନହୋଇ ଏବଂ Ego ବା Super-Egoର ତାଡନାର ସମ୍ମୁଖୀନ ନହୋଇ କାରାରୁ ମୁକ୍ତ ହେବାପାଇଁ ଓ ପ୍ରବୃତ୍ତି ଚରିତାର୍ଥ କରିବାପାଇଁ 'Id' ଅନେକ ଗୁଡ଼ିଏ ଅବଲମ୍ବନର ସହାୟତା ନେଇଥାଏ । ତନ୍ମଧ୍ୟରୁ ସ୍ୱପ୍ନ, ପ୍ରତୀକବାଦୀ ଆଚରଣ ଇତ୍ୟାଦି ଉଲ୍ଲେଖଯୋଗ୍ୟ ।। ୭୩ ।। Wit ମଧ୍ୟ ମନର ଅଚେତନ ସ୍ତରର ଏକ ପ୍ରକାଶ । ଏହା ସ୍ୱପ୍ନ ପରି ; କିନ୍ତୁ ସ୍ୱପ୍ନଠାରୁ କମ ପ୍ରତୀକବାଦୀ । ସ୍ୱପ୍ନ ଦୁର୍ବୋଧ୍ୟ, କିନ୍ତୁ Wit ଦୁର୍ବୋଧ୍ୟ ନୁହେଁ । କାରଣ କ୍ଲେଶରୁ ରକ୍ଷା ପାଇବ ପାଇଁ ସ୍ୱପ୍ନ ପରିକଳ୍ପିତ । କିନ୍ତୁ Wit ଆନନ୍ଦ ଆଣିବାପାଇଁ ଉଦ୍ଦିଷ୍ଟ । ଅପରପକ୍ଷରେ Humour ଓ comic ପ୍ରାକ୍‌ଚେତନ ସ୍ତରର ପରିପ୍ରକାଶ ।

---

।।୭୦।। Feeling of Guilt.

।।୭୧।। Neurotic Anxiety.

।।୭୨।। Reaction Farmation [Reversing techniques etc].

।।୭୩।। Conversion Techniques, Dreams [wish fulfillment], Symbolic behaviour etc.

[The Psychopathology of everyday life—Freud, 1914].

ଏହିପରି ଭାବରେ ଫ୍ରଏଡ୍‌ଙ୍କ ତତ୍ତ୍ୱଗୁଡ଼ିକ ମଧ୍ୟରେ ସାଧାରଣ ଆଚରଣର ବ୍ୟତିକ୍ରମ, ଅଭିଯୋଜନା ଅକ୍ଷମ ଆଚରଣ, ଅସାଧାରଣ ଆଚରଣ ଓ ବିଷମ-ବ୍ୟକ୍ତିତ୍ୱର ଆଚରଣ [Deviant Personality] ଇତ୍ୟାଦିଙ୍କୁ ବ୍ୟାଖ୍ୟା କରିବାର ସୂତ୍ର ମିଳେ ॥ ୭୪ ॥ ଏହି ସବୁ ସୂତ୍ରଗୁଡ଼ିକ ସୁଷମ "ବ୍ୟକ୍ତିତ୍ୱ" ଗଠନର ଅଧ୍ୟୟନ ପର୍ଯ୍ୟାୟ ଭିତରେ ଅନ୍ତର୍ଭୁକ୍ତ କରାଯାଇ ପାରେ ।

"ବ୍ୟକ୍ତିତ୍ୱ" ସମ୍ବନ୍ଧରେ ଯେଉଁ ସବୁ ମତବାଦ ପ୍ରବର୍ତ୍ତିତ ହୋଇଛି ସେସବୁଥିରେ ଏହାକୁ ମୋଟାମୋଟି ଏକ ପରିବର୍ତ୍ତନଶୀଳ-ଗ୍ରନ୍ଥି ଭାବରେ କଳ୍ପନା କରାଯାଇଛି । ଏହି ଗ୍ରନ୍ଥିର ଗଠନ ପ୍ରଣାଳୀ ଓ ଉକ୍ତ ପ୍ରଣାଳୀକୁ ନିୟନ୍ତ୍ରିତ କରୁଥିବା ପ୍ରଚେଷ୍ଟାଦିକୁ ବିଭିନ୍ନ ସମୟରେ ଭିନ୍ନ ଭିନ୍ନ ଦୃଷ୍ଟିକୋଣରୁ ମଧ୍ୟ ଅନୁଶୀଳନ କରାଯାଇଛି । ଏହି ସବୁ ମତବାଦର ସିଦ୍ଧାନ୍ତ ଓ ତତ୍ତ୍ୱଗୁଡ଼ିକ ମଧ୍ୟରେ ପାର୍ଥକ୍ୟ ରହିଛି ମୁଖ୍ୟତଃ ଏ ସଂକ୍ରାନ୍ତୀୟ କେତେକ ମୌଳିକ ଧାରଣା ମଧ୍ୟସ୍ଥ ଆପେକ୍ଷିକ ଗୁରୁତ୍ୱ ଉପରେ । ମଣିଷର ଶାରୀରିକ ଗଠନ ଓ ବଂଶଗୁଣ ଏବଂ ଅଭିଜ୍ଞତା ଏହି ଦୁଇ କାରକ ମଧ୍ୟରୁ କିଏ ବ୍ୟକ୍ତିତ୍ୱ ଗଠନକୁ ଅଧିକ ପରିମାଣରେ ନିୟନ୍ତ୍ରଣ କରେ ? ପୂର୍ବ ଅଭିଜ୍ଞତା ଫଳରେ ସଂଗଠିତ ହୋଇଥିବା ଅନ୍ତର୍ନିହିତ ବାଧତା ଓ ପରିସ୍ଥିତି, ଏହି ଦୁଇ କାରକ ମଧ୍ୟରେ କିଏ ଅଧିକ ସକ୍ରିୟ ଓ ପ୍ରଭାବଶାଳୀ ? ବ୍ୟକ୍ତିତ୍ୱର ଗଠନ କେତେକ ନିର୍ଦ୍ଦିଷ୍ଟ ସ୍ୱଭାବ ଦ୍ୱାରା ପ୍ରଭାବିତ ଓ ନିୟନ୍ତ୍ରିତ ହେଉଛି ନା ଏହା ବହୁ ଏକକ, ବହୁ ଗୁଣର ସମାହାରର ଏକ ସନ୍ଧି ଆକାରରେ ପ୍ରତିଭାତ ହେଉଛି ? ? ଏହିପରି ସବୁ ।

---

॥୭୪॥ (i) Repression or converted unconscious drives etc.

(ii) Trauma, Frustration, over-gratification etc

(iii) Sublimation of libidinal energy etc.

ମଣିଷର ଏକ ନିର୍ଦ୍ଦିଷ୍ଟ ଶାରୀରିକ ଗଠନ ଓ ବଂଶାନୁକ୍ରମିକ ଗୁଣ ଅଛି । ଏହାଦ୍ୱାରା ତା'ର ଆଚରଣରେ ଅପେକ୍ଷାକୃତ ଏକ ସଙ୍ଗତ ଓ ସ୍ଥିରତା ପ୍ରକାଶ ପାଇଥାଏ । ଏହି ଗୁଣ ଓ ଗଠନ ଯୋଗୁଁ ଅନୁଭୂତ ଜରିଆରେ ପରିବର୍ତ୍ତନ ପ୍ରକ୍ରିୟା ସଂଗଠିତ କରାଇବାର ସମ୍ଭାବନା ଓ ସାମର୍ଥ୍ୟରେ ଏକ ପରିସୀମା ଟାଣି ହୋଇଯାଏ । ଅପରପକ୍ଷରେ, ଅନୁଭୂତ ଦ୍ୱାରା ମଣିଷର ଆଚରଣରେ ପରିବର୍ତ୍ତନ ସାଧିତ ହୋଇଥାଏ । ଅନୁଭୂତ ମାଧ୍ୟମରେ ଆଚରଣ ବା ବ୍ୟବହାରକୁ ନିୟନ୍ତ୍ରଣ ଓ ପରିବର୍ତ୍ତନ କରୁଥିବା କାର୍ଯ୍ୟକାରକ ଗୁଡ଼ିକ ପରିବର୍ତ୍ତନ ପ୍ରକ୍ରିୟା ସଂଗଠିତ କରୁଥିବା କାର୍ଯ୍ୟକାରକ ସହ ସଂଶ୍ଳିଷ୍ଟ ହୋଇଯାଏ । ସେହିପରି, ଏକ ନିର୍ଦ୍ଦିଷ୍ଟ ପ୍ରକାରର ପରିସ୍ଥିତିରେ ବ୍ୟକ୍ତିର ଆଚରଣରେ ସ୍ଥିରତା ବା ସଙ୍ଗତ ପ୍ରକାଶ ପାଇଥାଏ । ବ୍ୟକ୍ତିର ପୂର୍ବ ଅଭିଜ୍ଞତା ସାଧାରଣତଃ କୌଣସି ଏକ ପରିସ୍ଥିତିର ଗୁରୁତ୍ୱ ଅବା ତାତ୍ପର୍ଯ୍ୟ ଉପଲବ୍ଧି ଓ ଅବଧାରଣା କରିବାରେ ସହାୟକ ହୋଇଥାଏ । ତେଣୁ ଅପର ପକ୍ଷରେ, ବିଭିନ୍ନ ପରିସ୍ଥିତିରେ ବ୍ୟକ୍ତିର ଆଚରଣ ଅନୁଧ୍ୟାନ କଲାବେଳେ ତନ୍ମଧ୍ୟରେ ଏହି ପୂର୍ବ ଅଭିଜ୍ଞତାର ବିଚାରକୁ ବାଦଦେଇ ବ୍ୟକ୍ତିର ଆଚରଣ ସମ୍ବନ୍ଧରେ ସଠିକ ଜ୍ଞାନ ଆହରଣ କରିବା ସମ୍ଭବ ହୁଏ ନାହିଁ । ପୁନଶ୍ଚ, ମଣିଷର ଆଚରଣ ମଧ୍ୟରେ ଆପାତତଃ କେତେକ ନିୟମାତ୍ମକ ବିଷୟବ ଥିବାର ପରିଲକ୍ଷିତ ହୋଇପାରେ । ଅର୍ଥାତ୍ କେତେକ ବିଷୟବ ଭିତ୍ତିରେ ମଣିଷର ଆଚରଣକୁ କେତେକ ପର୍ଯ୍ୟାୟଭୁକ୍ତ କରାଯାଇ ପାରେ । କଳା, ଗୋରା ; ଡେଙ୍ଗା, ଗେଡ଼ା ; ମୋଟା ଅବା ପତଳା ଲୁହେଁ । ଗୁଣ ନେଇ, ସାମର୍ଥ୍ୟ ନେଇ, ମନୋବୃତ୍ତି ନେଇ, ପ୍ରକୃତ ନେଇ ମଣିଷକୁ ଶ୍ରେଣୀଭୁକ୍ତ କରାଯାଇ ପାରେ । ଅନେକ ଦିନ ଆଗେ ଏହିପରି ଏକ ଉଦ୍ୟମ ଦେଖିବାକୁ ମିଳିଥିଲା । ଯଥା —Phlegmatic, Choleric, Sanguine, Melancholic ଇତ୍ୟାଦି ଇତ୍ୟାଦି ॥ ୭୫ ॥ ଏହିପରି କୌଣସି ଏକ

॥୭୫॥ ପରବର୍ତ୍ତୀ କାଳରେ ମଧ୍ୟ ଦେଖନ୍ତୁ Kretschmerଙ୍କ ଶ୍ରେଣୀ ବିଭାଗ । (i) Asthenic, (ii) Atheletic, (iii) Pyknic, (iv) Dysplastic । ଏହାଛଡ଼ା Sheldonଙ୍କ (i) Endomorphy

ଶ୍ରେଣୀ ବିଭାଗ ଭିତ୍ତିରେ ବ୍ୟକ୍ତିତ୍ୱକୁ କେତେକ ନିର୍ଦ୍ଦିଷ୍ଟ ବିଭାବର ପରିପ୍ରକାଶ ରୂପେ ମଧ୍ୟ ବିଚାର କରାଯାଇପାରେ । କିନ୍ତୁ ଯେପରି ସବୁ କୃଷ୍ଣ ବର୍ଣ୍ଣର ଲୋକ "ଶ୍ୟାମ" ନୁହନ୍ତି କି ସବୁ "ନନ୍ଦୁକ କାସୁରୀ କାଖରେ କଳସୀ" ନାରୀ "ରାଧା" ନୁହନ୍ତି, ସେହିପରି ଅପ୍ରେମିତ ବିଭାବ ଗୁଡ଼ିକ ଅନୁସାରେ ଉକ୍ତ ବିଭାବ ପର୍ଯ୍ୟାୟରେ ଆସୁଥିବା ବହୁ ବ୍ୟକ୍ତିଙ୍କ ମଧ୍ୟରେ ଥିବା ବ୍ୟକ୍ତିଗତ ଭିନ୍ନତା ଲୁଚାଇ ଦେଇ ହେବ ନାହିଁ । ପ୍ରତ୍ୟେକ ବ୍ୟକ୍ତି ମଧ୍ୟରେ ଦେଖିବାକୁ ମିଳେ

[viscerotonic], (ii) Mesomorphy [Scmatotcnic], (iii) Ectomorphy [Cerebrotonic] ମଧ୍ୟ ଦେଖିବା କୁ ମିଳେ ।

[Contemporary Approaches to Psychology, Edited by Harry Helson & William Bevan, Affiliated East-West Press, New Delhi, East West Student Edition, 1969, chap.-13—Article by E. Jerry Phares, page 508].

Kretschmer. E.—Physique and character, N. Y. Harcourt, Brace & Co, Inc, 1925.

Sheldon W. H.—(i) The varieties of human Physique. N. Y Harper and Brothers, 1940.

(ii) The varieties of Temporament, N. Y. Harper & Brothers, 1942.

ମଣିଷର ଶ୍ରେଣୀ ବିଭାଗ ସମ୍ବନ୍ଧରେ, ବହୁ ପ୍ରକାରର ତତ୍ତ୍ୱ ରହିଛି । Phrenology [Gall], Lavater's Physiognomy, Graphology, Jung's Psychological types, Klexography [Rorshach] ଇତ୍ୟାଦି ଇତ୍ୟାଦି । ଏହାଛଡ଼ା Palmistry, ଜ୍ୟୋତିର୍ବିଦ୍ମାନଙ୍କର ବାରରାଶି, ସ୍ତ୍ରୀ ଓ ପୁରୁଷଙ୍କର ବିଭାଗୀକରଣ ଇତ୍ୟାଦି ମଧ୍ୟ ଦେଖିବାକୁ ମିଳେ ।

ବହୁ ଗୁଣର ସମାହାର ଏବଂ ଏହି ଗୁଣ ଗୁଡ଼ିକ ପ୍ରତ୍ୟେକ ପ୍ରତିକ୍ରିୟାର ଏକ ଏକ ସମ୍ଭାବନା ଭାବରେ ଗ୍ରହଣ କରାଯାଇ ପାରେ । ସେହି ହେତୁ ଏକ ନିର୍ଦ୍ଦିଷ୍ଟ ବାସ୍ତବ ପରିସ୍ଥିତିରେ ବ୍ୟକ୍ତି ଅନୁସାରେ ପ୍ରତିକ୍ରିୟା ପୃଥକ୍ ହୋଇ-ଥାଏ । ଏବଂ ପ୍ରତ୍ୟେକ ବ୍ୟକ୍ତିପାଇଁ ଏହି ଭିନ୍ନତାର ଏକ ସ୍ୱାତନ୍ତ୍ର୍ୟ ରହିଛି ।

ଭାବନା ଭିନ୍ନ, ସିଦ୍ଧାନ୍ତ ବି ଭିନ୍ନ, କିନ୍ତୁ ଏହି ସବୁ ଭାବନା ଓ ସିଦ୍ଧାନ୍ତ ମୂଳରେ ଗୋଟିଏ ସାଧାରଣ ବିଚାର ରହିଛି । ତାହା ହେଉଛି, ଆଚରଣରେ "ଦିଗ-ନିର୍ଦ୍ଦେଶ" । କାଳର ଦିଗ ଅଛି, ନିର୍ଦ୍ଦେଶ ଅଛି, କାଳର "ଦିଗତ୍ୱ" ପରି ମଣିଷର ଆଚରଣର ମଧ୍ୟ ଏକ ଦିଗତ୍ୱ ଅଛି । ଏକ ନିର୍ଦ୍ଦେଶ ଅଛି । ଯାହାର ଅନ୍ୟ ନାମ "ଉଦ୍ଦେଶ୍ୟ" । ମଣିଷର ସବୁ ଆଚରଣ ଉଦ୍ଦେଶ୍ୟ ଭିତ୍ତିକ ଯଦିଓ ଏହି ଉଦ୍ଦେଶ୍ୟ ସମ୍ବନ୍ଧରେ ଭିନ୍ନ ଭିନ୍ନ ମତ ରହିଛି ଏବଂ ଯଦିଓ ସବୁ ସମୟରେ ବ୍ୟକ୍ତି ଏହି ଉଦ୍ଦେଶ୍ୟ ସମ୍ବନ୍ଧରେ ସଚେତନ ନୁହେଁ । ପ୍ରତ୍ୟେକ ପ୍ରତିକ୍ରିୟାରେ ଅର୍ଥାତ୍ ପ୍ରତ୍ୟେକ ଆଚରଣର ପ୍ରକାଶ ମୂଳରେ ଏହି "ଦିଗତ୍ୱ" ବା ଉଦ୍ଦେଶ୍ୟର ପ୍ରଚ୍ଛେଦନା ବିଦ୍ୟମାନ । ଆଚରଣ ସର୍ବଦା ଉଦ୍ଦେଶ୍ୟ ସିଦ୍ଧି ବା ଚରିତାର୍ଥ ପାଇଁ ନିଯୋଜିତ । ପ୍ରତିକ୍ରିୟା ପ୍ରକାଶ ଦ୍ୱାରା ପରିସ୍ଥିତିକୁ ବଦଳାଇ ଦେବାର ଉଦ୍ୟମ ମଧ୍ୟରେ ଏହି ଉଦ୍ଦେଶ୍ୟ ସିଦ୍ଧିର ଉଦ୍ୟମ ଅନୁଶୀଳନ କରାଯାଇପାରେ । ଏହି "ଉଦ୍ଦେଶ୍ୟ-ଆଚରଣ" ସମ୍ବନ୍ଧକୁ ବୈଜ୍ଞାନିକ ପ୍ରଣାଳୀର କାର୍ଯ୍ୟ କାରଣ [Cause-Effect] ସହ ତୁଳନା କରାଯାଇ ଥାଏ । କାର୍ଯ୍ୟ-କାରଣ ବୈଜ୍ଞାନିକ ପଦ୍ଧତିର ମୂଳଦୁଆ । କାର୍ଯ୍ୟକୁ କାରଣ ଦ୍ୱାରା ବର୍ଣ୍ଣନା କରାଯାଏ । କାରଣ ଦ୍ୱାରା ଆଶୁକାର୍ଯ୍ୟ ସମ୍ବନ୍ଧରେ ପ୍ରାକ୍-ସୂଚନା ଦିଆଯାଏ । ମନୋବିଜ୍ଞାନରେ ଏହି କାରଣ [Cause]କୁ "ଉଦ୍ଦେଶ୍ୟ" [Motive] ଭାବରେ ଏବଂ କାର୍ଯ୍ୟ [Effect]କୁ ଆଚରଣ [Behaviour] ଭାବରେ ପରିକଳ୍ପନା କରାଯାଇଥିଲା । ଏବଂ ଧରି ନିଆ ଯାଇଥିଲା ଯେ ଆଚରଣକୁ ଉଦ୍ଦେଶ୍ୟଦ୍ୱାରା ବର୍ଣ୍ଣନା କରାଯାଇ ପାରିବ । ଏବଂ ଉଦ୍ଦେଶ୍ୟ ଦ୍ୱାରା ଆଶୁ-

ଆଚରଣ ସମ୍ବନ୍ଧରେ ପ୍ରାକ୍-ସୂଚନା ଦିଆଯାଇ ପାରିବ । ସେଇଥିପାଇଁ ଆସିଥିଲା ଏକ "ଦିଗନ୍ଧ"ର ନିର୍ଦ୍ଦେଶ । କାରଣରୁ କାର୍ଯ୍ୟଆଡ଼େ । ଉଦ୍ଦେଶ୍ୟରୁ ଆଚରଣ ଆଡ଼େ ।

କିନ୍ତୁ ଏହି "ଦିଗନ୍ଧ" ଆସୁଛି କେଉଁଠୁ ?? କେତେକ ଏହାକୁ ଏକ ଶକ୍ତି ବା Energy ରୂପେ କଳ୍ପନା କରିଥିଲେ । ଫ୍ରଏଡ଼ ସେମାନଙ୍କ ମଧ୍ୟରେ ମୁଖ୍ୟ । Energyର ସଂରକ୍ଷଣ ଓ ରୂପାନ୍ତର ଅଛି । ସୁତରାଂ ମନସ୍ତାତ୍ତ୍ୱିକ ଶକ୍ତିର ବି ସଂରକ୍ଷଣ ଓ ରୂପାନ୍ତର ଅଛି ଆଉ କେତେକ ଏହାକୁ ଏକ ଜୀବନୀ-ଶକ୍ତି ବା ଜୀବନୀ-ପ୍ରବୃତ୍ତି ରୂପେ ପରିକଳ୍ପନା କରିଥିଲେ । ବିକାଶର ପ୍ରବୃତ୍ତି । ପୂର୍ଣ୍ଣ ବ୍ୟକ୍ତି-ସତ୍ତାର ସମନ୍ୱିତ ବିକାଶର ପ୍ରବୃତ୍ତି [Gordon Allport] । ଅନ୍ତର୍ଗ୍ରଣ ସଙ୍ଗଠନର ପ୍ରବୃତ୍ତି । ଆତ୍ମ-ପରିଶତିର ପ୍ରବୃତ୍ତି, ଇତ୍ୟାଦି ଇତ୍ୟାଦି । ବ୍ୟକ୍ତି-ସତ୍ତାର ଏକ ଅନନ୍ୟ ସାଧାରଣତା ଅଛି । ଏହାର ସମ୍ପୂର୍ଣ୍ଣ କେବଳ ବୈଜ୍ଞାନିକ ଅନୁଶୀଳନ ଓ ନିୟମ [Nomothetic Approach] ଦ୍ୱାରା ବୁଝି ହେବ ନାହିଁ । ସଂପୂର୍ଣ୍ଣ ବ୍ୟକ୍ତି-ସତ୍ତାର ବିଚାରପାଇଁ ଏକ ବ୍ୟକ୍ତି-ନିଷ୍ଠ ବିଚାର [Ideographic Approach] ମଧ୍ୟ ଆବଶ୍ୟକ । ଏହି ପୂର୍ଣ୍ଣ ବ୍ୟକ୍ତି-ସତ୍ତା [Proprium]ର ବିଭିନ୍ନ ବିଭବ ॥ ୭୬ ॥ ବିକାଶର ବିଭିନ୍ନ ଅବସ୍ଥାରେ ଆତ୍ମପ୍ରକାଶ କରିଥାଏ । ଆଚରଣଗତ ଉଦ୍ଦେଶ୍ୟ, ପୂର୍ଣ୍ଣ ବ୍ୟକ୍ତି-ସତ୍ତାର ଅସ୍ତିତ୍ୱ ଓ ଗୁରୁତ୍ୱ ପ୍ରତିପାଦିତ କରିବା ଦିଗରେ କାର୍ଯ୍ୟ କରେ । ପୁଣି ଅନ୍ୟ କେତେକ ଏହାକୁ କେତେକ ନିର୍ଦ୍ଦିଷ୍ଟ ମନସ୍ତାତ୍ତ୍ୱିକ ଆବଶ୍ୟକତା ରୂପରେ ଚିହ୍ନଣ କରିଛନ୍ତି । ଯେମିତି

---

॥୭୬॥ (i) Sense of bodilyself (ii) Self-identity (iii) Self-esteem (iv) Self-extension (v) Self-image (vi) Self as rational agent (vii) Self as involved in long range goals or propriate striving.

ଅନୁଭୂତର କ୍ଷେତ୍ର ମଧ୍ୟରେ ବ୍ୟକ୍ତି-ସତ୍ତାର ଆତ୍ମ ସମ୍ମାନ ଓ ସ୍ୱୀକୃତ [Roger] ଅସହାୟତା ଓ ତତ୍‌ଜନିତ ନ୍ୟୁନମନ୍ୟତାର ପରିପୂରଣ [Adler], ବ୍ୟଷ୍ଟି ଓ ସମଷ୍ଟିର ଅବଚେତନ ମଧ୍ୟରେ ଏକ ପାରସ୍ପରିକତା [Jung], ଇତ୍ୟାଦି ଇତ୍ୟାଦି ।

ପୁଣି ଆଉ କେତେକଙ୍କ ମତରେ "ବ୍ୟକ୍ତିତ୍ୱ" ବ୍ୟକ୍ତିର ଏକ ଅନ୍ତର୍ସ୍ଥ ବ୍ୟାପାର ନୁହେଁ । ଏହା ଏକ ନିର୍ଦ୍ଦିଷ୍ଟ ସାମାଜିକ ପରିସ୍ଥିତି ପ୍ରତି ପ୍ରତିକ୍ରିୟା ପ୍ରଦର୍ଶନ କରିବାର ଏକ ସମ୍ଭାବନା [Potential] । ବ୍ୟକ୍ତିତ୍ୱର ଏକ ଏକତ୍ୱ ରହିଛି । ସାମାଜିକ ପରିସ୍ଥିତି ଓ ବ୍ୟକ୍ତି ମଧ୍ୟସ୍ଥ କ୍ରିୟା ପ୍ରତିକ୍ରିୟା ମଧ୍ୟରେ ରହିଛି ସବୁ ଆଚରଣର ମୂଳଦୁଆ ଓ ବ୍ୟକ୍ତିତ୍ୱ ଅନୁଶୀଳନର ଏକକ । ଅନୁଭୂତ ଆଚରଣ ଉପରେ ପ୍ରଭାବ ପକାଏ । ପୁରାତନ ଶିକ୍ଷା ଓ ଜ୍ଞାନ ନୂତନ ଅନୁଭୂତି ଦ୍ୱାରା ବଦଳିଯାଏ । ସେହିପରି ନୂତନ ଅନୁଭୂତ ପୁରାତନ ଶିକ୍ଷା ଓ ଜ୍ଞାନଦ୍ୱାରା ପ୍ରଭାବିତ ହୁଏ । ସୁତରାଂ ପ୍ରତ୍ୟେକ ଆଚରଣରେ ମନସ୍ତାତ୍ତ୍ୱିକ ଶକ୍ତିର ରୂପାନ୍ତର ଥାଉ ନ ଥାଉ, ପୂର୍ବ ଅଭିଜ୍ଞତା-ଭିତ୍ତି ଉପରେ ଥାଏ ଏକ ଗଣନା ଆଉ ଆଶା [Expectancy], ଯାହା ଉଦ୍‌ବିଗ୍ନତା ହ୍ରାସ କରିବାପାଇଁ କ୍ରିୟାଶୀଳତା ସୃଷ୍ଟି କରେ । ଆଚରଣର ଏହି ଦିଗ ଯୁକ୍ତତା ହିଁ ଉଦ୍ଦେଶ୍ୟ [Motivation] ଏବଂ ଏହି ଉଦ୍ଦେଶ୍ୟକୁ ଆଚରଣରେ ପ୍ରଭାବ ଦ୍ୱାରାହିଁ ଜାଣି ହୁଏ ।। ୭୭ ।।

---

।।୭୭।। Social Learning Theoryରେ ନିମ୍ନଲିଖିତ ଧାରଣା ଗୁଡ଼ିକ ଦେଖିବାକୁ ମିଳେ—ଯଥା—Avoidance or irreal behaviour, low/high freedom of movement, need value Reinforcement, Minional goal level, expectancy, situational determinants, Generalisation gradient, Consual validation etc. etc.

କିନ୍ତୁ "ବେଗ", ଭ୍ରମ ହୋଇପାରେ । ଉଦ୍ଦେଶ୍ୟ, ବ୍ୟର୍ଥ ହୋଇପାରେ ପ୍ରବାହ, ସ୍ଥଗିତ ହୋଇପାରେ । ବେଗ, ଗତିହୀନତାରେ ପରିଣତ ହୋଇ ଯାଇପାରେ । ଏହାକୁ ମନୋବିଜ୍ଞାନର ପରିଭାଷାରେ କହନ୍ତି ଆତ୍ମରକ୍ଷା [Defense mechanism] । ଫ୍ରୟେଡ୍ ଏଇ ଆତ୍ମରକ୍ଷାର ସଂଗ୍ରାମକୁ ମନସ୍ତାତ୍ତ୍ୱିକ ଶକ୍ତିର ବହୁମୁଖୀ ରୂପାନ୍ତର ମଧ୍ୟରେ ଠାବ କରିଥିଲେ । ଆଡ୍‌ଲର ଏହାକୁ ମୁଖ୍ୟତଃ "ଅକୃତକାର୍ଯ୍ୟତାର ପ୍ରତିକାର" [Defenses against failure] ରୂପରେ ଚିହ୍ନଣ କରିଛନ୍ତି । "ଦୂରତ୍ୱ ବୋଧ" ସୃଷ୍ଟି ହିଁ ଏହି ପ୍ରତିକାରର ପ୍ରଣାଳୀ । ଏହି "ଦୂରତ୍ୱବୋଧ"ହିଁ ବ୍ୟକ୍ତିର ଅକୃତକାର୍ଯ୍ୟତାକୁ ଘଣ୍ଟ ଘୋଡ଼ାଇବା ପାଇଁ ଭିନ୍ନ ଭିନ୍ନ ବାଟ ବାଛି ନେଇ ଥାଏ ॥ ୭୮ ॥ ଅନ୍ୟଚକ୍ଷୁରେ ବ୍ୟକ୍ତିର ସମ୍ମାନ ଓ ମୂଲ୍ୟବୋଧ ଦୃଷ୍ଟିରୁ କାର୍ଲ୍ ହୋର୍ଣ୍ଣେଜର ଉପରୋକ୍ତ ଆତ୍ମରକ୍ଷା ପ୍ରଣାଳୀର ବ୍ୟାଖ୍ୟା କରିଛନ୍ତି । ଅନ୍ୟ-ମାନଙ୍କ ଚକ୍ଷୁରେ 'ବ୍ୟକ୍ତି' ଯେଉଁ ଯୋଗ୍ୟତାର ଅଧିକାରୀ ହୋଇଥାଏ, ସେ ନିଜକୁ ସେହି ଯୋଗ୍ୟତା ଅନୁରୂପ ଗଢ଼ିବାକୁ ଚେଷ୍ଟା କରେ । ସେହି ଯୋଗ୍ୟତାର ସ୍ତର ସହ ଖାପ ଖୁଆଇ ସେ ନିଜର ଆଚରଣ ନିୟନ୍ତ୍ରଣ କରେ । ଯେଉଁ ସବୁ କାର୍ଯ୍ୟକଳାପ, ପ୍ରତିକ୍ରିୟା, ସଂବେଦନା ବା ଅନୁଭୂତି ଏହି ଯୋଗ୍ୟତା ସ୍ତରର ବିରୋଧ କରେ ବା ତା ସହ ଖାପ ଖାଏ ନାହିଁ, ବ୍ୟକ୍ତି ସେଗୁଡ଼ିକ ଆତ୍ମ-ରକ୍ଷା ପ୍ରଣାଳୀ ଦ୍ୱାରା ଏଡ଼ାଇ ଦେବାର ପ୍ରୟାସ କରିଥାଏ ।

---

॥୭୮॥ ଆଡ୍‌ଲର୍‌ଙ୍କ ପ୍ରବର୍ତ୍ତିତ ଧାରଣା ମଧ୍ୟରେ concept of distance, Masculine protest, Feminine protest, Pampering, Rejection, Style of life, Fictionalised goal Social interest ପ୍ରଭୃତି ପ୍ରଧାନ । ତାଙ୍କ ମତରେ Sexual difficulties are secondary outcomes of struggle for power.

ଯୋଗ୍ୟତାସ୍ତର ଓ ଅନୁଭୂତ ଏହି ଉଭୟ ମଧ୍ୟରେ ଏକ ସଂଗତ ଆଣିବା-ପାଇଁ ଏହା କାର୍ଯ୍ୟ କରିଥାଏ ॥ ୭୯ ॥

ଆମେ ଆଗରୁ ଦେଖିଛୁ, ଯେଉଁସବୁ ଆବିଷ୍କାର ବା ଉଦ୍ଭାବନ "ପ୍ରାକୃତିକ ମନୋନୟନ" ପ୍ରଣାଳୀକୁ ସାହାଯ୍ୟକରେ, ସେହି ପ୍ରଣାଳୀକୁ ତ୍ୱରାନ୍ୱିତ କରେ ତାର ବିକଳ୍ପ ପ୍ରଣାଳୀ ଆକାରରେ ଆସେ ଏବଂ ବିଶେଷକରି ବଂଶକୁଞ୍ଚ ମଧ୍ୟଦେଇ ପରିବାହିତ ନ ହୋଇ ଉତ୍ତର ପୁରୁଷଙ୍କ ପାଖରେ ପହଞ୍ଚିପାରେ ସେହି ଆବିଷ୍କାର ବା ଉଦ୍ଭାବନ ସକଳ ଓ ତତ୍‌ଜନିତ ଭାବଧାରା ଗୁଡ଼ିକ ମଣିଷର ଚେତନା ସମକ୍ଷରେ ନୂତନ ଦିଗନ୍ତ ଉନ୍ମୋଚନ କରି ନୂତନ ଅବବୋଧ ସୃଷ୍ଟି କରିବାରେ ସହାୟକ ହୁଏ । ଏ ପରିପ୍ରେକ୍ଷାରେ ଭାଷା, ପରମ୍ପରା, ଓ ସଂସ୍କୃତିର ଭୂମିକା ସମ୍ବନ୍ଧରେ କିଛିଟା ଆଭାସ ମଧ୍ୟ ଦିଆଯାଇଥିଲା । ଫ୍ରୟେଡ଼ଙ୍କ ଭାବଧାରା ମଧ୍ୟରେ "ବ୍ୟକ୍ତିତ୍ୱ"ର ଆଲୋଚନା କରିବାକୁଯାଇ ଦେଖିଲୁ ସମ୍ପୂର୍ଣ୍ଣ ଏକ ନୂତନ ସ୍ୱୟଂସଂପୂର୍ଣ୍ଣ ଜଗତ । ଇଆର ସୌରମଣ୍ଡଳ, ଗ୍ରହ, ଉପଗ୍ରହ, ପୂର୍ଣ୍ଣିମା, ଅମାବାସ୍ୟା, ଗ୍ରହଣ ଓ ପରାଗ ମଧ୍ୟ ଦେଖିଲୁ । ପୁଣି ଦେଖିଲୁ ମନ ଅନୁଶୀଳନର ବହୁ ବିକଳ୍ପ, ପ୍ରକଳ୍ପ ଓ ଉପାୟ । ସେଠି "ମନ ପବନ କଠଉ" ଦେଖିଲୁ । ଦେଖିଲୁ ଆଲ୍ଲାଉଦ୍ଦୀନର ଦୀପ । ପୁଣି ମନର ଫରୁଆ ମଧ୍ୟରେ ଦେଖିଲୁ ଜୀବନ ନାଟିକା । ମଣିଷର ସୃଷ୍ଟି ଆଉ ବିବର୍ତ୍ତନ କାହାଣୀ ପରେ ଶୁଣିଲୁ ମଣିଷର "ବ୍ୟକ୍ତିତ୍ୱ",ର "ଉଜ୍ଜ୍ୱଳବର୍ତ୍ତୀ" କାହାଣୀ । ଦେଖିଲୁ ମଣିଷ ମନର ଅସଲ କବଗ୍ରକ୍ତର ଚେହେରା । ଏହା

---

॥୭୯॥ ରୋଜରଙ୍କ ପ୍ରକଳ୍ପିତ ଧାରଣା ଗୁଡ଼ିକ ମଧ୍ୟରେ Need for positive regard, Self regard, Condition of worth, incongruence or vulnerability, Selfactualisation, Internal frame of reference, Adience, Avoidance ଇତ୍ୟାଦି ପ୍ରଧାନ ।

ଆଉ ସବୁବେଳେ "ଈଶ୍ୱର ରଚିଥିବା ମନୋହର ସଂସାର" ନୁହେଁ । ଏହି ଆବିଷ୍କାର ମଣିଷକୁ ଦେଲା ନୂତନ କ୍ଷମତାର ଗୌରବ । ବାହାର ପ୍ରକୃତି ଉପରେ ଅଧିକାର ସାଙ୍ଗକୁ ନିଜ ପ୍ରକୃତି ଉପରେ ଆଧିପତ୍ୟ । ନିଜ ଉପରେ ମନୋନୟନ ପ୍ରଣାଳୀ ପ୍ରୟୋଗ କରିବାର ନୂତନ ଆୟୁଧ :

"ପ୍ରବୃତ୍ତି"ର ଘୋଡ଼ାଦୌଡ଼ ଦେଖିଥିଲୁ ଧର୍ମର ପ୍ରାଙ୍ଗଣରେ, ବିବର୍ତ୍ତନର ଉପାଖ୍ୟାନ ଆଲୋଚନା କଲାବେଳେ ଅବିକା ଦେଖିଲୁ 'ମନ' ମଧ୍ୟରେ ସେଇ ପ୍ରବୃତ୍ତିର ଭୂମିକା ନାହିଁ । ଅଭ୍ୟୁତ୍ଥାନ କଥା ପ୍ରସଙ୍ଗରେ ଦେଖିଥିଲୁ ପ୍ରବୃତ୍ତିର ନୂତନ ରୂପାୟନ । ପ୍ରତିକ୍ରିୟା କେବଳ ଜୈବିକ ପ୍ରତିକ୍ରିୟା ହୋଇ ରହେ ନାହିଁ । ପ୍ରବୃତ୍ତି ରୂପାୟିତ ହୁଏ ପ୍ରବଣତା ରୂପରେ । ଉଦ୍ଦୀପନାର ପ୍ରତିକ୍ରିୟା କେବଳ ଜୈବିକ ନ ହୋଇ ସମାଜ, ମନସ୍ତତ୍ତ୍ୱ ଓ ସଂସ୍କୃତିଭିତ୍ତିକ ହୋଇଯାଏ । ମଣିଷର ବ୍ୟକ୍ତିତ୍ୱ ଗଠନର ପରିପାଟୀ ଓ ମନର ରୂପ, ପ୍ରସାଧନ, ଆଉ ବିନ୍ୟାସ ପ୍ରସଙ୍ଗରେ ଦେଖୁଛୁ ମୋଟାମୋଟି ସେଇ କଥା । ଏଠି ପ୍ରବୃତ୍ତିର ରୂପାୟନ ହେଉଛି ପ୍ରବଣତା ଆକାରରେ । ପ୍ରବୃତ୍ତି ଓ ପ୍ରବଣତା, ଏଇ ଦୁଇଟିର ମଧ୍ୟବର୍ତ୍ତୀ ଅବସ୍ଥା ପାଇଁ ଉଦ୍ଦିଷ୍ଟ ମନୋବିଜ୍ଞାନର ତତ୍ତ୍ୱ, ସିଦ୍ଧାନ୍ତ ଓ ମୀମାଂସା ଯେତେକ । ସେଇଥି ପାଇଁ ଏଠି ଦେଖୁଛୁ ତାତ୍ତ୍ୱିକ ବହୁଳତା । ବହୁ ମତବାଦର ଧୂଳିପଟଳ । କିନ୍ତୁ ସେ ସବୁକୁ ମୋଟାମୋଟି ଅନୁଭୂତି ଆହରଣ କରିବାର ପ୍ରଣାଳୀ ଭାବରେ ଗ୍ରହଣ କରାଯାଇ ପାରେ । ଏହି ସବୁ ପ୍ରଣାଳୀ ସମୃଦ୍ଧ କରୁଛି ସଂସ୍କୃତିକୁ । ଏବଂ ପ୍ରତ୍ୟକ୍ଷ ବା ପରୋକ୍ଷଭାବେ ଜୈବିକ ବିବର୍ତ୍ତନର ପ୍ରାକୃତିକ ମନୋନୟନ ପ୍ରଣାଳୀର ବିକଳ୍ପଭାବେ କାର୍ଯ୍ୟକରୁଛି । ଅନ୍ୟକଥାରେ ଜୈବିକ ବିବର୍ତ୍ତନର ପରବର୍ତ୍ତୀ ଅବସ୍ଥା "ମାନବିକ ବିବର୍ତ୍ତନ"ରେ କାର୍ଯ୍ୟକରୁଛି ଯେଉଁ ପ୍ରାକୃତିକ ମନୋନୟନ ପ୍ରଣାଳୀ, ଏହା ସେହି ପ୍ରଣାଳୀକୁ ସମୃଦ୍ଧ କରୁଛି । ଆମେ ଆଗରୁ ଦେଖିଥିଲୁ, ପରମ୍ପରା ଓ ସଂସ୍କୃତି ନୂତନ ମନୋନୟନ ପ୍ରଣାଳୀଭାବେ କାର୍ଯ୍ୟକରି ବିବର୍ତ୍ତନର କ୍ରିୟାଶୀଳତାକୁ ପ୍ରଥମ ଥରପାଇଁ ସଚେତନ କରିଥିଲା । ସେହି କ୍ରିୟାଶୀଳତାରେ ଦିଗ ନିର୍ଦ୍ଦେଶଦେଇ

ପ୍ରଥମ ଥର ପାଇଁ ତହିଁରେ ଚେତନଶୀଳ ଭାବେ ଉଦ୍ଦେଶ୍ୟର ସଂଯୋଜନା କରାଇଥିଲା । ବର୍ତ୍ତମାନ ମାନସିକ ପ୍ରକ୍ରିୟା ଓ ବ୍ୟକ୍ତିତ୍ୱ ଗଠନର ପ୍ରକ୍ରିୟା "ପିଣ୍ଡ-ବ୍ରହ୍ମାଣ୍ଡ ତତ୍ତ୍ୱ" ମଧ୍ୟରେ 'ଉଦ୍ଦେଶ୍ୟ"ର "ସୁଗନ୍ଧ" ଦେଖିଲୁ । ବିବର୍ତ୍ତନର ନୂତନ ଧାରାକୁ ଅଧିକ ତ୍ୱରାନ୍ୱିତ ଓ ଅଧିକ କ୍ରିୟାଶୀଳ କରାଇବାର ଏକ କାରକଭାବେ ଏହି 'ସୁଗନ୍ଧ"କୁ ଗ୍ରହଣ କରାଯାଇ ପାରେ । ଏହି କାରକ ମନକୁ ଅବଧୂତ କରି ନିଜକୁ ନିଜର ଗୁରୁ କରିଛି । ମାନବ ବିକାଶର ନୂତନ ଓ ଉଚ୍ଚତର ସମ୍ଭାବନା ଚରିତାର୍ଥ କରିବାପାଇଁ ମାନବକୁ ଅଧିକ ସଚେତନ କରିଛି । କରିଛି ଅଧିକ କ୍ରିୟାଶୀଳ । ଏବଂ ଏହାର ଜରିଆରେ ଆସିଛି ନୂତନ ଦ୍ୟୋତନା, ନୂତନ ସୁଗନ୍ଧ ଆଉ ନୂତନ ଅବବୋଧ ।

— ❋ —

## ମାନବର ମାନସ ସତ୍ତାର କ୍ରମ ବିଘଟନ

ଆଦିମ ସମାଜର ମଣିଷ ସମକ୍ଷରେ ଥିଲା କେବଳ ମଣିଷ ଓ ପ୍ରକୃତି ଜନିତ ସଂଘର୍ଷର ସମସ୍ୟା । ଏହି ଅବସ୍ଥାରେ ଅଲୌକିକ କୌଶଳ ଅବଲମ୍ବନ ଦ୍ୱାରା ବସ୍ତୁସତ୍ତା,ଉତ୍ପାଦନ,ରୋଗ ଓ ଭୋଗ ଇତ୍ୟାଦିର ଅଦୃଶ୍ୟ ଶକ୍ତି-ଗୁଡ଼ିକୁ ପ୍ରଭାବିତ କରିବାର ଚେଷ୍ଟା ଅର୍ଥାତ ଐନ୍ଦ୍ରଜାଲିକ ଶକ୍ତି ଦ୍ୱାରା ଘଟଣାବଳୀକୁ ପ୍ରଭାବିତ କରିବା, ସମାଜରେ ସୃଜନଶୀଳ କର୍ମପ୍ରେରଣା ତା କ୍ରିୟାଶୀଳତାର ଉତ୍ସଥିଲା । କୃଷି ଭିତ୍ତିକ ସମାଜରେ କର୍ମ ବିଭାଗର ପ୍ରଚଳନ ଆରମ୍ଭ ହେବାପରେ ଏବଂ ଫଳରେ ସମାଜରେ ବହୁବିଧ ଆନୁଷଙ୍ଗିକ ନୂତନ ବିଶ୍ୱାସ,ଉତ୍ସବ, ଅନୁଷ୍ଠାନ,ବିଧାନ, ବିଧିନିଷେଧର ପ୍ରବର୍ତ୍ତନ ହେବାପରେ, ଜନ-ଗୋଷ୍ଠୀର ମାନସସତ୍ତାର ବିଭକ୍ତୀକରଣ ପ୍ରକ୍ରିୟା ଆରମ୍ଭ ହୋଇଥିଲା—ଉତ୍ପାଦନରେ ପ୍ରତ୍ୟକ୍ଷ ଭାବରେ ଅଂଶଗ୍ରହଣ କରୁଥିବା ଗ୍ରାମ୍ୟଗୋଷ୍ଠୀ ଓ ଉତ୍ପନ୍ନ ଦ୍ରବ୍ୟ ଭୋଗକାରୀ ନାଗରିକ ଗୋଷ୍ଠୀ--ଏଇ ଦୁଇ ବିଭାଗ; 'ଲୋକସ୍ତର' ଓ "ଅଲୋକସ୍ତର" ବା "ପଲ୍ଲୀସ୍ତର" ଓ "ପୁରସ୍ତର" । ଘୋଷ ବା ବ୍ରଜ, ପାଲି ବା ପାଲିଘୋଷ, ଗ୍ରାମ ବା କ୍ଷେତ, ପର୍ବତ, ନଗର ବା ପୁର ଇତ୍ୟାଦିର ବିକାଶ, ପାର୍ଥକ୍ୟ ଓ ପରିତୁଳନା ସମ୍ବନ୍ଧରେ ମହାଭାରତ, ବାୟୁପୁରାଣ ଭାଗବତ ପୁରାଣ, ଅଗ୍ନି ପୁରାଣ, ବୃହଦାରଣ୍ୟକ ଉପନିଷଦ ଓ ବରାହ ପୁରାଣ ଇତ୍ୟାଦିରେ ବର୍ଣ୍ଣନା ରହିଛି । ॥୮୦॥

---

॥ ୮୦ ॥ The Social and Military position of the Ruling Caste in Ancient India—by Edward W. Hopkins; Bharat-Bharati, Varanasi, 1972, page 21-221.

ଶ୍ରମ ବିଭାଗ ପରେ ପ୍ରତ୍ୟକ୍ଷ ହେଲା ମଣିଷ-ମଣିଷ ମଧ୍ୟସ୍ଥ ସଂଘର୍ଷର ସମସ୍ୟା—ମାନବର ମାନସ ସତ୍ତାରେ ଅନ୍ତର୍ନିହିତ ଦ୍ୱନ୍ଦ୍ୱ ଓ ବିଘଟନ, ବାଧାପ୍ରାପ୍ତ ପ୍ରବଣତା ଓ ନିଗ୍ରହ- ଯାହା ଜାତିର ଭାଷା, କାହାଣୀ କିମ୍ବଦନ୍ତୀ ଓ ଧର୍ମ ଇତ୍ୟାଦିକୁ ଆଶ୍ରୟକରି ଏକ ସାଙ୍କେତିକ ରୀତି ବା ପ୍ରତୀକ ଧର୍ମର ଅବଲମ୍ବନରେ ଆତ୍ମ ପ୍ରକାଶ କଲା । ଏହି ଆତ୍ମପ୍ରକାଶ ଏକ ପକ୍ଷରେ ସାମୂହିକ ମାନସ ସତ୍ତାର ପ୍ରବଣତା, ସଂବେଦନା, ଅନୁଭୂତି, ଆକାଂକ୍ଷା, ପ୍ରବୃତ୍ତି ଓ ପରିଣତିର ଚିର ବନ୍ଧନକାରୀ ଏକପ୍ରକାରର Participation mystique । ଅପର ପକ୍ଷରେ ପରିସ୍ଥିତିକୁ ପ୍ରେୟ ବା ବାଞ୍ଛିତ ଦିଗରେ ବାନ୍ଧିନେବା ପାଇଁ, ନୂତନ ପୃଥିବୀ ଓ ନୂତନ ଜଗତ ସୃଷ୍ଟି କରିବାର ବାର୍ତ୍ତା ବହନକାରୀ ଏକ ସାମୂହିକ ଅଥଚ ମାନବୋତ୍ତର ମାନସ ସତ୍ତାର ସମ୍ବେଦନ ବା ଦୂରଦୃଷ୍ଟି-ରୂପୀ ସାମୂହିକ ଚିନ୍ତନ ବା Collective Representation ।।୮୧।।

ଏହି ଅବସ୍ଥାରେ ସ୍ୱାଭାବିକ ଉପାୟରେ ଅଲୌକିକ ଦୈବ ବା ଅଦୃଶ୍ୟ ଶକ୍ତିକୁ ପ୍ରଭାବିତ କରିବାର ଅର୍ଥାତ ଐନ୍ଦ୍ରଜାଲିକ ଶକ୍ତି ବଦଳରେ ଧର୍ମୀୟ ଅନୁଷ୍ଠାନହିଁ କ୍ରିୟାଶୀଳତାର ଦ୍ୟୋତନା ଥିଲା ।

ମାନବର ମାନସ ସତ୍ତାର ଏହି ବିଘଟନ ଓ ସଂକୋଚନ ପ୍ରକ୍ରିୟା କର୍ମ ବିଭାଗର ବୈଚିତ୍ର୍ୟ ଓ ଜଟିଳତା ମଧ୍ୟରେ ଏବଂ ସଭ୍ୟତାର ଅଗ୍ରଗତିକ୍ରମେ ଶନୈଃ ଶନୈଃ ଆହୁରି ଜଟିଳ ଓ ଆହୁରି ସଂକୀର୍ଣ୍ଣ ହେବାକୁ ଲାଗିଲା । ଏହି ଧାରା ନିରବଚ୍ଛିନ୍ନ ଏବଂ ଏବେ ବି ଅବ୍ୟାହତ ରହିଛି । ତଥାପି ଏହି ପ୍ରକ୍ରିୟା

---

।।୮୧।। X X Participation Mystique ଓ Collective Representation—ଏଇ ଦୁଇ ଧାରଣା ପାଇଁ "Modern Man in search of a Soul" by C. G. Jung ପ୍ରଥମେ ଏହି ଦୁଇ ଧାରଣା ଦେଇଥିଲେ । [translated by W. S. Dell and Cary F. Baynes, 1941] ଦ୍ରଷ୍ଟବ୍ୟ Levy-Bruhl.

ମଧ୍ୟରେ ମଣିଷ ଓ ତାର ବାସସ୍ଥଳୀ ଆମର ଏକ ସୁନ୍ଦର ଦ୍ୟାବା ପୃଥିବୀର ଏକ ଭୂମିଆଦୀ ରହିଥିଲା । ଟୋଲେମିଙ୍କ ବିଶ୍ୱ ଚିତ୍ରରେ ଆମର ବସୁମାତା, ବରାହଙ୍କ ଦ୍ୱାରା ସମୁଦ୍ର ଗର୍ଭରୁ ଉତ୍ଥିତ ଧରଣୀ, ଏହି ସୌରମଣ୍ଡଳର କେନ୍ଦ୍ରଥିଲା । ସୂର୍ଯ୍ୟ ତା ଚାରିପାଖରେ ପ୍ରଦକ୍ଷିଣ କରୁଥିଲେ । କିନ୍ତୁ ସେହି ଗୌରବ ବେଶିଦିନ ରହିଲା ନାହିଁ । କୁପର ନିକସ୍ (୧୪୭୩—୧୫୪୩) କହିଲେ ଯେ ପୃଥିବୀ ଚାରିପାଖରେ ସୂର୍ଯ୍ୟ ବୁଲୁନାହିଁ । ପୃଥିବୀହିଁ ସୂର୍ଯ୍ୟ ଚାରିପାଖରେ ଏକ ବାଧ୍ୟତା ବଶତଃ ପ୍ରଦକ୍ଷିଣ କରୁଛି । ପୃଥିବୀ ମୁଖ୍ୟ ନୁହେଁ, କେନ୍ଦ୍ର ନୁହେଁ, ବିଶେଷ ସୃଷ୍ଟି ନୁହେଁ । ତଥାପି ଅବଶେଷ ରହିଲା କିଛିଟା ଭୂମିଆଦୀ— ମଣିଷ ବିଶ୍ୱର ଶ୍ରେଷ୍ଠ ଓ ସାର୍ଥକ ସୃଷ୍ଟି ଆତ୍ମାକର ବର୍ତ୍ତିକା, ଶିବ ଓ ସୁନ୍ଦର । ସବୁରି ମଧ୍ୟରେ ମଣିଷହିଁ ଶ୍ରେଷ୍ଠ । ତାପରେ ଡାରୱିନ୍ (୧୮୦୯-୧୮୮୨) ଦେଖେଇ ଦେଲେ ଯେ ମଣିଷ ଏକ ଇଚ୍ଛାକୃତ ସାର୍ଥକ ସୃଷ୍ଟି ନୁହେଁ । ପ୍ରାକୃତିକ ମନୋନୟନ ଓ ଯୋଗ୍ୟତମର ଉଦ୍‌ବର୍ତ୍ତନ ବା ଉଜ୍‌ଜୀବନ ନିୟମର ଅବଶ୍ୟମ୍ଭାବୀ ପ୍ରକାଶରୂପେ ଜୀବୀ ନିମ୍ନ ଗଠନରୁ ଉଚ୍ଚ ଗଠନ ଆଡ଼କୁ କ୍ରମବିକାଶ ପଥରେ ଅଗ୍ରଗତି କରିବାର ଏହା ଏକ ପରିଣତି । ତା' ହେଲେ ମଣିଷ ଆଉ ଶ୍ରେଷ୍ଠ ବା ସାର୍ଥକ ସୃଷ୍ଟି ହୋଇ ରହିଲା ନାହିଁ । କିନ୍ତୁ ତଥାପି ତା ଭିତରେ ରହିଲା ସୁନ୍ଦର, ଚିରନ୍ତନ, ଭାବବିଜ୍ଞ, ସ୍ନେହ, ପ୍ରେମ, କରୁଣା, ମୁକ୍ତ ଆଉ ବୌଦ୍ଧିକତା । ସେ ବନ୍ୟ ନୁହେଁ, ପଶୁ ନୁହେଁ, ତାଠାରୁ ଊର୍ଦ୍ଧ୍ୱରେ । କିନ୍ତୁ ଫ୍ରୟେଡ଼ (୧୮୫୬-୧୯୩୯) ଏହି ଦାମ୍ଭିକତା ପୁଣି ଭାଙ୍ଗି ଦେଲେ । ସେ କହିଲେ, ପାଣିରେ ଭାସୁଥିବା ବରଫ ଖଣ୍ଡ ପରି ମାନବର ଏଇ ମନ; ଏକ ଦଶମାଂଶ ଉପରେ, ନବ ଦଶମାଂଶ ତଳେ । ଏଇ ଦଶମାଂଶହିଁ ଚେତନ, ସାମାଜିକ ଆଉ ସୁନ୍ଦର । ଏହି ସ୍ତର ତଳେ ନବ ଦଶମାଂଶରେ ଅନ୍ଧାର ଗୁଡ଼ୁଗୁଡ଼ୁ, ସାତତାଳ ପାଣି, ସାତତାଳ ପଙ୍କ ଆଉ ଫଚୁଆ—ଅଛି ଅବଚେତନ ଆଉ ମଗ୍ନଚେତନ ବା ଅଚେତନ ମନ—ବନ୍ୟ, ଆଦିମ ଓ ପାଶବିକ । ମଣିଷ ମନର ଗରିମା ପୁଣିଥରେ ଚୂର୍ଣ୍ଣୀଭୂତ ହୋଇଗଲା ।

ଏହା ସାଙ୍ଗକୁ ପରେ ପରେ ଆସିଲା ବହୁ ନୂତନ ଚିନ୍ତା, କ୍ୱାଣ୍ଟମ ଚିନ୍ତା ଆଉ ନୂତନ ଆୟମ (dimension)-ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ, ବିଜ୍ଞାନର ଚମତ୍କାରିତା, ଜ୍ଞାନର ବିସ୍ଫୋରଣ, ଶିଳ୍ପ ବିପ୍ଳବ ଓ ସଭ୍ୟତା, ବସ୍ତୁର ରହସ୍ୟ ମୟତା, ପୃଥ୍ବୀ ଓ କାଳର ଅବିଚ୍ଛିନ୍ନତା ଇତ୍ୟାଦି ଇତ୍ୟାଦି । ମାନବ ସମକ୍ଷରେ ଅଷ୍ଟ ଐଶ୍ୱର୍ଯ୍ୟର ଅସୀମ ସମ୍ଭାବନା ଖୋଲିଗଲା ସତ । ଚନ୍ଦ୍ରଗାମୀ ନର୍କର ପଥ ବି ଖୋଲିଗଲା । ସେ ଏକାଧାରରେ ହୋଇଲା ଦେବ ଓ ଦାନବ, ରାକାମିକାସ୍ ଆଉ ଭସ୍ମାସୁର । ସେ ଗୋଲକ ବିହାରୀ ହେଲା ସତ, କିନ୍ତୁ ପତିତପାବନ ହୋଇ ପାରିଲା ନାହିଁ । ଫଳରେ ଏଇ କ୍ରମବିବର୍ତ୍ତନ ପ୍ରକ୍ରିୟା ଏକ ବ୍ୟାପ୍ତ ବିଶ୍ୱ (macrocosm)ରୁ ମାନବର ମାନସ ସତ୍ତାକୁ କ୍ରମେ ଏକ କ୍ଷୁଦ୍ରାଦପି ବିଶ୍ୱ (microcosm)ଆଡ଼କୁ ନେଇ ଆସିଲା । ଠିକ୍ ଯେମିତି ସୌରମଣ୍ଡଳର ଚିତ୍ର ପରିବର୍ତ୍ତେ ଏକ କେନ୍ଦ୍ରୀୟ ନାଭିକେନ୍ଦ୍ର ଚାରିପାଖରେ କେତେକ ନିର୍ଦ୍ଦିଷ୍ଟ କକ୍ଷରେ ଘୂରିବୁଲୁଥିବା ବିଦ୍ୟୁତ୍‌ଦଣ୍ଡର ପ୍ରତିଛବି । ଅବା ଯେମିତି ଦେହ ବା ପିଣ୍ଡ ମଧ୍ୟରେ ବ୍ରହ୍ମାଣ୍ଡର ପରିକଳ୍ପନା । ଏହି ବିଘଟିତ ମନସ ସତ୍ତାରେ space-time contineuum ଅଛି, କିନ୍ତୁ ନାହିଁ ଆଧ୍ୟାତ୍ମିକ ବା ଭାବଗତ conti-uum । ଭାବ ଓ ପ୍ରବଣତା ଅଛି କିନ୍ତୁ ତା ସାଙ୍ଗକୁ ବେଶି ଅଛି ଭାବ ଓ ପ୍ରବଣତାର ବିଶ୍ଳେଷଣ । ଜଳ ସ୍ଥାନରେ ଅଛି ଦୁଇଗୋଟି ଉଦ୍‌ଯାନ ପରମାଣୁ ଆଉ ଗୋଟିଏ ଅମ୍ଳଜାନ ପରମାଣୁ । ଦୂରବୀକ୍ଷଣ ସାଙ୍ଗରେ ଅଣୁବୀକ୍ଷଣ ଅଛି, କିନ୍ତୁ ପାରିପାର୍ଶ୍ୱିକତା ଓ ଚିନ୍ତା ରାଜ୍ୟରେ ସୀମା ସରହଦ ନାହିଁ । ଅଛି ଏକ ପ୍ରାକ୍ ନୈୟାୟିକ, ପ୍ରାକ୍-ଚେତନ ଶ୍ରେଣୀର ପୋଡ଼ୁକୃଷି ଆଉ ଶଗଡ଼ ସଭ୍ୟତା ସାଙ୍ଗେ ବୋଏଇଂଗ, ରକେଟ୍ ଓ ଆକାଶ-ଉପଗ୍ରହ ସଭ୍ୟତାର ସହାବସ୍ଥାନ ।

କର୍ମ ବିଭାଗର ପ୍ରବର୍ତ୍ତନ ଫଳରେ ଦୂର ଅତୀତରେ ଜନଗୋଷ୍ଠୀର ମାନସ ସତ୍ତାରେ ଯେଉଁ ବିଭକ୍ତ କରଣ ଓ ବିଘଟନ ପ୍ରକ୍ରିୟା ଆରମ୍ଭ ହୋଇ-ଥିଲା—ଏହା ଯେପରି ସେଇ ପ୍ରକ୍ରିୟା ଓ ଧାରାର ଚୂଡ଼ାନ୍ତ ପରିଣତି । ପାତଞ୍ଜଳଙ୍କ ଚିତ୍ତବୃତ୍ତି ନିରୋଧ ନୁହେଁ—ସଂପୂର୍ଣ୍ଣରୂପେ ଚିତ୍ତବୃତ୍ତି, ଚିତ୍ତ

ଆଉ ବୃଦ୍ଧିର ପ୍ରୟୋଜନ । ଆଗେ ଏହା ପଲ୍ଲି ଆଉ ପୁର ମଧ୍ୟରେ ବାଣ୍ଟି-ହୋଇ ଯାଇଥିଲା । କିନ୍ତୁ ଅବେ କା' ପୁର ସ୍ଥାନରେ ଆସିଲା ଅତିକାଂକ୍ଷ ସହର—megalopolis । ପୁର ମଧ୍ୟରେ ଆସିଲା ଶିଳ୍ପଭିତ୍ତିକ ସମାଜର ସୃଷ୍ଟି-ଶ୍ରମିକ । ତା ପାଇଁକୁ ଆସିଲେ ଉଦ୍‌ବୃତ୍ତ ଶ୍ରମର ମୁନାଫା ଭୋଗକାରୀ ପରାଙ୍ଗ-ପୁଷ୍ଟ ଗୋଷ୍ଠୀ—ନବଗୁଣ୍ଡାର ରୂପରେ । ଆସିଲା ଗଣମାନବ (mass-man) ।।୮୨।। ଆଉ ବହୁ ଆଯ୍ୟାମଯୁକ୍ତ (multi-dimensional) ମାନବ । ପୂର୍ବର ଉତ୍ପାଦନ ବମୁଖୀ ଅବସର ଭିତ୍ତିକ ଓ ଉଦ୍‌ବୃତ୍ତ ଖଜଣା ଉପଭୋଗୀ ସଂସ୍କୃତ ଚେତନା ବଦଳରେ ଆସିଲା ନୂତନ ମୂଲ୍ୟାୟନ—"ଖାଲି ମୂଲ୍ୟ (Price), ମୂଲ୍ୟାୟନ ନୁହେଁ"—ଧନସଂପର୍କ-Cash-nexus ଗୋଟିଏ ପିନ୍ ତିଆରି କରିବାରେ ଯେଉଁ ବିଶଦ ଶ୍ରମବିଭାଗ ବ୍ୟବସ୍ଥା ରହିଛି, ସେ ସମ୍ବନ୍ଧରେ ଆଡାମସ୍ମିଥଙ୍କ ବିଖ୍ୟାତ ଉଦାହରଣ ଅତିଶୟ ତାତ୍ପର୍ଯ୍ୟପୂର୍ଣ୍ଣ । ଶ୍ରମ ବିଭାଗର ନିଖୁଣତା ଫଳରେ କର୍ମର ବୈଚିତ୍ର୍ୟ ଓ ଆହ୍ଲାଦ ରହିଲାନାହିଁ; ରହିଲା ନାହିଁ ଜୀବନ ଧାରାର ସଂହତି ଓ ସମନ୍ୱୟ । ଉତ୍ପାଦନରେ ଅଂଶ ଗ୍ରହଣ କରୁଥିବା ଲୋକେ ରହିଲେ, ଅଛନ୍ତି ଓ ଥିବେ । କିନ୍ତୁ ଉତ୍ପାଦନ ଭୋଗ-କରୁଥିବା ଲୋକଙ୍କ ସଂଖ୍ୟା ଓ ପ୍ରକାର ବଢ଼ିଗଲା । ବଢ଼ିଲେ ଭୋଗୀ ଓ ଅଧିକାରୀ । ବଢ଼ିଲା ଭୋଗ ଓ ଅଧିକାରର ସ୍ତରଭେଦ ଓ ପ୍ରକାର ଭେଦ । ଏହା ପ୍ରତ୍ୟକ୍ଷ ନ ହୋଇ ଅନେକ ସ୍ଥଳରେ ହେଲା ପରୋକ୍ଷ ଓ ରହସ୍ୟମୟ । ଭୋଗ ଓ ଅଧିକାରପାଇଁ ଆସିଲା ବହୁ ଐନ୍ଦ୍ରଜାଲିକ ଉପାୟ, ଯାହା ଆଦିମ ସମାଜରେ ମୁଖ୍ୟତଃ ଉତ୍ପାଦନପାଇଁ ଉଦ୍ଦିଷ୍ଟ ଥିଲା ।।୮୩।।

---

।।୮୨।। The Revolt of the Masses—Jose Ortega Y. Gasset—ଦ୍ରଷ୍ଟବ୍ୟ ।

।।୮୩।। ମାର୍କସଙ୍କ "ଶୋଷଣ-ନୀତି" (Theory of Surplus value] ସମ୍ବନ୍ଧରେ ଏହି କ୍ଷୁଦ୍ର ପରିସର ମଧ୍ୟରେ ଆଲୋଚନା କରିବା ସମ୍ଭବ ନୁହେଁ । କିନ୍ତୁ ସଂକ୍ଷେପରେ ଏହି ନୀତିକୁ ଏକ ଗାଣିତିକ ଫର୍ମୁଲା ଆକାରରେ ପ୍ରକାଶକରାଯାଇପାରେ । ଫର୍ମୁଲାଟି ହେଲା :—

$$\dot{R}^{I} = \frac{R}{W+Q^{I}}$$

$$= \frac{\dot{Q}-W}{W+Q^{I}}$$

$$= \frac{L.o - L.w}{W+Q^{I}}$$

$$= \frac{L\,(o-w)}{W+Q^{I}}$$

where $R^{I}$ = Rate of return on turn over (profit)

$R$ = Return on fixed factors of production [Land and Capital]

$w$ = Variable or working capital [pay roll]

$Q^{I}$ = Capital goods and inventories currently used up in producing 'O'.

O = Total production or output.

Q = Stock of capital.

o = output per man.

L = labour force actually employed.

$Q = L.\,o$

$w$ = minimum wage rate

$W = L.\,w$

ଉପରୋକ୍ତ ଫର୍ମୁଲରେ $R^{I}$ 'ଲାଭ' ସୂଚାଉଛି । ସମୀକରଣରେ 'ଲବ' [o—w] ବଢ଼ିଲେ ବା 'ହର' [$W+Q^{I}$] କମିଲେ 'ଲାଭ'ର ପରିମାଣ ବଢ଼ିବ । କିନ୍ତୁ 'ହର' [$W+Q^{I}$] ପ୍ରାୟ ଏକ ସ୍ଥିର ପର୍ଯ୍ୟାୟରେ ଥାଏ । ତେଣୁ ଅଧିକ ଲାଭପାଇଁ 'ଲବ' [o—w] ବଢ଼ିବାର ଆବଶ୍ୟକ, ଅର୍ଥାତ ଶ୍ରମିକର ଉତ୍ପାଦନ (o) ଓ ତାର ମଜୁରୀ ହାର (w) ମଧ୍ୟରେ ତାରତମ୍ୟ ବୃଦ୍ଧି ପାଇବା ଆବଶ୍ୟକ ।

[ Economic Development—Principle problems and policies—by Benjamin Higgins, [1974, page 113-115.] Central Book Depot, Allahabad.

ଫଳରେ ସବୁକିଛିର ଚେହେରା ବଦଳିଗଲା । ଆଗେ ଈଶ୍ୱର ସମସ୍ତଙ୍କର ମଙ୍ଗଳ କରୁଥିଲେ । କିନ୍ତୁ କ୍ରମେ ସେ ବହୁ ଲୋକଙ୍କର ହିତ କଲେ । Greatest good of the greatest number । ତାପରେ ଆମକୁ କୁହାଗଲା ସେ ଅନାଗ୍ରହୀ ଓ ଉଦାସ, ଅଥବା ସେ ଶୋଇ ପଡ଼ିଛନ୍ତି । ହୁଏତ କ୍ଷୀର ସମୁଦ୍ରରେ ନିଜ ସହଧର୍ମିଣୀଙ୍କ ପାଦସେବା ଆଉ ପାର୍ଶ୍ୱଚରଙ୍କ ସଂଗୀତ ସେବାରେ ଅଭିଭୂତ ହୋଇ ସେ ଅନନ୍ତ ଶୟନ ଯାଇଛନ୍ତି । ପୁଣି କୁହାଗଲା ଯେ ନା--ସେ ଶୋଇ ନାହାନ୍ତି ସେ ହୁଏତ ମରିଯାଇଛନ୍ତି । କିଛିକାଳ ପରେ ତା ବି ବଦଳି ଗଲା—ନା ସେ ମରି ନାହାନ୍ତି । ସେ ବିଲକୁଲ ନାହାନ୍ତି । କେବେ ବି ନ ଥିଲେ । ଏହିପରି ବହୁବିଧ ଚିନ୍ତା, ପରୀକ୍ଷା, ବିଳାପ, ଆର୍ତ୍ତନାଦ, ଉପହାସ, ଅବଜ୍ଞା ଆଉ ମନନ ।

ତାହେଲେ ରହିଲା କ'ଣ ! ଆଗେ ଐନ୍ଦ୍ରଜାଳିକ ଶକ୍ତିଦ୍ୱାରା ଅର୍ଥାତ୍ ଅଲୌକିକ ଉପାୟରେ ଅଦୃଶ୍ୟ ଶକ୍ତିକୁ ମାନବ ପ୍ରଭାବିତ କରିବାକୁ ଚେଷ୍ଟା କରୁଥିଲା । ପରେ ସ୍ୱାଭାବିକ ଉପାୟରେ ଏହି ଅଦୃଶ୍ୟ ବା ଦୈବୀଶକ୍ତିକୁ ପ୍ରଭାବିତ କରିବାକୁ ଚେଷ୍ଟାକଲା । ତାର ନାମ "ଧର୍ମ" । କିନ୍ତୁ ଏଇ ଧର୍ମର ଚେହେରା ବି ବଦଳି ଗଲା । ଧର୍ମ କ'ଣ ? ଧ୍ରିୟତେ ଧର୍ମ ଇତ୍ୟାହୁଃ ସ ଏବ ପରମ ପ୍ରଭୁଃ । ଆଗରୁ ଧର୍ମ ଧାର୍ମିକକୁ ଧରିଥିଲା । ଧାର୍ମିକ ଧର୍ମକୁ ଧରିଥିଲା । ଲୋକସମୂହ ଧର୍ମଦ୍ୱାରା ଧୃତ ରକ୍ଷିତ ଓ ପରିଚାଳିତ ଥିଲା--ଏହିପରି ଅନେକ କଥା । କିନ୍ତୁ ଏବେ ତାହା ଦୁଇଗୋଟି ଉଦ୍‌ଯାନ ପରମାଣୁସହ ଗୋଟିଏ ଅମ୍ଳଜାନ ପରମାଣୁର ସଂମିଶ୍ରଣରେ ଜଳ ସୃଷ୍ଟି କରିବାର ପ୍ରକ୍ରିୟା ହୋଇଗଲା । ଅଲୌକିକ ଓ ଦୈବୀ ଶକ୍ତିକୁ ପ୍ରଭାବିତ କରିବାର ଚେଷ୍ଟା ଆଉ ରହିଲା ନାହିଁ—ବିଜ୍ଞାନଠାରୁ ସେ ସମ୍ବନ୍ଧରେ ଶେଷ ଉତ୍ତର ନ ହେଲେ ବି ଖୁବ୍ ହୃଦୟଗ୍ରାହୀ ଉତ୍ତର ମିଳିଲା । ତେଣୁ ଏବେ ଆଧୁନିକ ଜୀବନ ପାଖରେ ଏହି ଦୁଇଟି ସଂଭାବନା (ଇନ୍ଦ୍ରଜାଲ ଓ ଧର୍ମ) ନଷ୍ଟ

ହୋଇଗଲା।। ୪।। କିନ୍ତୁ ତା ସଙ୍ଗେ ନୂତନ ସମ୍ଭାବନାର ଉତ୍ପ୍ରେରକ (Catalyst) ଆସିଲା ନାହିଁ । ଅବା ଯେଉଁ ସମ୍ଭାବନା ଆସିଲା ଜୀବନଧାରା ଓ ମାନସ ସତ୍ତାରେ ତାହାର ଆତ୍ମୀକରଣ ହେଲାନାହିଁ । ସମ୍ଭାବନା ଥିଲା,—ସ୍ୱାଭାବିକ ଉପାୟରେ ସାମାଜିକ ପାରିପାର୍ଶ୍ୱିକ ଶକ୍ତି ବା ପ୍ରକ୍ରିୟାକୁ ପ୍ରଭାବିତ କରିବାର । କିନ୍ତୁ ମାନବର ଖଣ୍ଡିତ ମାନସ ସତ୍ତା, ଯୌଗିକ ସାମାଜିକ ବ୍ୟବସ୍ଥା ଭୋଗ ଓ ଅଧିକାରର ଉତ୍କଟ ବୈଷମ୍ୟ ମାନଙ୍କୁ ଅସୀମ ଆଶା ଓ ଆକାଂକ୍ଷାର ଦ୍ୱନ୍ଦ୍ୱରୁ ପରିଣତ ଏହି ସମ୍ଭାବନାକୁ ବିଡ଼ମ୍ବନାରେ ପରିଣତ କରିଦେଲା । ଅପର ପକ୍ଷରେ ଅଲୌକିକ ଉପାୟରେ ଏହି ସାମାଜିକ ଓ ପାରିପାର୍ଶ୍ୱିକ ଶକ୍ତିକୁ ପ୍ରଭାବିତ କରିବାର ଉଦ୍ୟମ ଥିଲା ନାହିଁ ବା ସଫଳ ହେଲାନାହିଁ । ଫଳ ର ବୌଦ୍ଧିକତା, ଦୁର୍ବୋଧତା, ଅସଂଲଗ୍ନତା, ବିଚ୍ଛିନ୍ନତା (alienation) । ଫଳରେ ବୈରାଗ୍ୟ, ଅବସାଦ, ଭୟଗ୍ରସ୍ତତା ନିର୍ଲିପ୍ତତା ଫଳରେ ଶୂନ୍ୟଗର୍ଭତା, ଅନ୍ତଃସାରଶୂନ୍ୟତା, ମୁକ୍ତିବାଦ, ଆଉ ଶେଷକୁ ଯନ୍ତ୍ରଣା ।

---

।।୪।। (i) Religion is the universal obsessional neurosis of humanity—Sigmund Freud. [The future of an Illusion.]

(ii) Religious misery is at once the expression of real misery and a protest against real misery. Religion is the sigh of the hard-pressed creature ; the heart of a heartless world ········· It is the opium of the people—Karl Marx [Introduction to a erique of Hegel's philosophy of Law.]

---

ଆମେ ସମସ୍ତେ ଆଧୁନିକ ଯୁଗର ମଣିଷ ସତ୍ୟ, କିନ୍ତୁ ଆମ ମଧ୍ୟରୁ ଆଜି କେତେ ଜଣ ଆଧୁନିକ ଚିନ୍ତା ଓ ଚେତନା ନେଇ ଜୀବନଯାପନ କରନ୍ତି ? କେତେ ଜଣ ଆଧୁନିକ ଅବବୋଧ ନେଇ ଯାବତୀୟ ବିଶ୍ୱବ୍ୟାପାର ବିଚାର କରନ୍ତି ? ଅଥଚ ଆଧୁନିକ ଅବବୋଧ ହିଁ ଭଦ୍ର ଓ ସମୃଦ୍ଧ ଜୀବନଯାପନର ମାପକାଠି । ଆଧୁନିକ ଜ୍ଞାନ, ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ପ୍ରସାର ଫଳରେ ମାନବୀୟ ଅବବୋଧର ରୂପାନ୍ତର ଘଟିଛି । ସେହି ରୂପାନ୍ତରର ପ୍ରକ୍ରିୟା, ଆଧୁନିକ ଅବବୋଧର ବିକାଶ ଓ ଫଳଶ୍ରୁତି, ଏହି ଗ୍ରନ୍ଥରେ ସତଥ୍ୟ ଯଥାସମ୍ଭବ ସରଳ, ସାବଲୀଳ ଭଙ୍ଗୀରେ ଆଲୋଚିତ ହୋଇଛି । ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ତଥ୍ୟ-ବିନ୍ୟାସରେ ଅପୂର୍ବ ଏବଂ ବିଶ୍ଳେଷଣରେ ଅସାଧାରଣ ଏହି ଗ୍ରନ୍ଥ ।

ଆଲୋଚକ ଶ୍ରୀବିଷ୍ଣୁଚରଣ ଦାସ (୧୯୩୭—) ଜଣେ ଚିନ୍ତାଶୀଳ ଲେଖକ ଭାବରେ ସୁପରିଚିତ । ଉଚ୍ଚକୋଟୀର ସୁଖପାଠ୍ୟ ପ୍ରବନ୍ଧ ରଚନାରେ ସେ ଆପଣା କୃତିତ୍ୱ ପ୍ରଦର୍ଶନ କରିଛନ୍ତି । ବହୁପାଠୀ ଓ ଶାସ୍ତ୍ରାବଗାହୀ ଶ୍ରୀଦାସ ପ୍ରଶାସନିକ ଦକ୍ଷତା ସାଙ୍ଗକୁ ଲେଖନୀସ୍ଥ ନିପୁଣତାର ପରିଚୟ ଦେଇଛନ୍ତି । ସଂପ୍ରତି ସେ ଓଡ଼ିଶା ସରକାରଙ୍କ ଘରୋଇ ବିଭାଗର ଡେପୁଟି ସେକ୍ରେଟେରୀ ଭାବରେ ଅବସ୍ଥାପିତ ।